# ଆରିଷ୍ଟଟଲ


ଲେଖକ

ଶ୍ରୀ ସୁବୋଧ କୁମାର ନନ୍ଦ, ଏମ୍. ଏ.

ରିଡ଼ର, ଦର୍ଶନଶାସ୍ତ୍ର ବିଭାଗ

ଗଙ୍ଗାଧର ମେହେର ମହାବିଦ୍ୟାଳୟ

ସମ୍ବଲପୁର



ପୁନର୍ମୁଦ୍ରଣ

୧୯୮୭





ପ୍ରକାଶକ :

ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା

ଭୁବନେଶ୍ୱର

# ARISTOTLE

Published under the centrally sponsored scheme of production of Books and Literature in Regional Languages at the University level by the Government of India in the Ministry of Education and Social Welfare (Department of Education), New Delhi.

*Written by :*
**Sri Subodh Kumar Nanda**, *M.A.*
*Reader in Philosophy,*
Gangadhar Meher College, Sambalpur

*Reviewed by :*
**Dr. Krushna Prasad Mishra**, *M.A.,Ph.D. (Toronto)*
*Reader in Philosophy,*
Utkal University, Bhubaneswar

*Language Scrutinised by :*
**Smt. Haripriya Mohapatra**, *M.A,(Oriya) M.A. (Sanskrit), B. Ed.,*
*Language Expert,*
Orissa State Bureau of Text-book Preparation & Production.

First Edition— 1978, 2100 Copies.
Re-Printed— 1987, 1000 Copies.

*Published by :*
THE ORISSA STATE BUREAU OF TEXT-BOOK PREPARATION AND PRODUCTION, BHUBANESWAR.

Publication No.—252



Paper used for printing of this book was made available by the Government of Orissa at concessional rate.

*Printed at :* *Price— Rs. 5/-*
**Writers Press**
Bhubaneswar-7

# ଦ୍ୱିତୀୟ ମୁଦ୍ରଣର ଭୂମିକା

ବିଶେଷ ଆନନ୍ଦର କଥା ଯେ, ଅଧ୍ୟାପକ ଶ୍ରୀ ସୁବୋଧ କୁମାର ନନ୍ଦଙ୍କ ପ୍ରଣୀତ 'ଆଇଷ୍ଟଚଲ' ପୁସ୍ତକଟିର ଦ୍ୱିତୀୟ ମୁଦ୍ରଣ ବର୍ତ୍ତମାନ ଏହି ସଂସ୍ଥା ଦ୍ୱାରା ପ୍ରକାଶିତ ହେବାକୁ ଯାଉଛି । ଏହା ପାଠକ ପାଠିକା, ଛାତ୍ର ଛାତ୍ରୀ, ଅଧ୍ୟାପକ ଓ ଅଧ୍ୟାପିକାମାନଙ୍କ ମହଲରେ ପୂର୍ବଭଳି ବିଶେଷ ଭାବରେ ଆଦୃତ ହେବ ବୋଲି ଆମର ଆଶା ।

ପ୍ରଫେସର ଗିରୀଶବାଳା ମହାନ୍ତି
ନିର୍ଦ୍ଦେଶିକା
ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ
ପ୍ରକାଶନ ସଂସ୍ଥା

# ମୁଖବନ୍ଧ

"ଉଚ୍ଚ ହେବା ପାଇଁ କର ଯେବେ ଆଶା
ଉଚ୍ଚ କର ଆଗେ ନିଜ ମାତୃଭାଷା"

—ଗଙ୍ଗାଧର ମେହେର ।

ଭାରତବର୍ଷ ବହୁ ଭାଷାଭାଷୀଙ୍କର ଦେଶ ହୋଇଥିବାରୁ ଏଠାରେ ଭାଷା ସମସ୍ୟା ଅତ୍ୟନ୍ତ ଜଟିଳ । ସ୍ୱାଧୀନତା ପରେ ଭାରତ ସରକାର, ଭାଷାବିଷୟକ ଏକ ଜାତୀୟନୀତି ନିର୍ଦ୍ଧାରଣ କରିବା ଉପରେ ଗୁରୁତ୍ୱ ଆରୋପ କଲେ । ସରକାରଙ୍କଦ୍ୱାରା ନିଯୁକ୍ତ ଶିକ୍ଷା କମିଶନ (୧୯୬୪-୬୬) ଏବିଷୟରେ ଉତ୍ତମରୂପେ ଅନୁସନ୍ଧାନ ତଥା ଅନୁଶୀଳନ କରି ସୁଚିନ୍ତିତ ବିବରଣୀ ଦାଖଲ କଲେ ଏବଂ ବିଭିନ୍ନ ଆଞ୍ଚଳିକ ଭାଷାହିଁ ବିଶ୍ୱବିଦ୍ୟାଳୟ ଶିକ୍ଷାର ମାଧ୍ୟମ ହେବା ଉଚିତ ବୋଲି ତାଙ୍କର ଦୃଢ଼ମତ ଉପସ୍ଥାପନ କଲେ ।

ଆଞ୍ଚଳିକ ଭାଷା ଶିକ୍ଷାର ମାଧ୍ୟମ ହେଲେ ବୈଜ୍ଞାନିକ ଓ ବୈଷୟିକ ଜ୍ଞାନ ସହଜରେ ଲୋକମାନଙ୍କ ମଧ୍ୟରେ ପ୍ରସାରଲାଭ କରିପାରିବ । ଏହା ଯେ କେବଳ ଦେଶକୁ ଶିଳ୍ପ ସମୃଦ୍ଧିର ବିକାଶରେ ସାହାଯ୍ୟ କରିବ, ତା' ନୁହେଁ; ପରନ୍ତୁ ବୈଜ୍ଞାନିକ ଦୃଷ୍ଟିକୋଣର ଦୃଢ଼ ଭିତ୍ତିଭୂମି ଜନସାଧାରଣଙ୍କ ମଧ୍ୟରେ ସ୍ଥାପିତ କରିପାରିବ, ଉଚ୍ଚଶିକ୍ଷିତ ସମାଜ ଓ ନିରକ୍ଷର ଜନତାଙ୍କ ମଧ୍ୟରେ ଯେଉଁ ବିରାଟ ବ୍ୟବଧାନ ରହିଛି, ତାହା ଧୀରେ ଧୀରେ ଦୂରୀଭୂତ ହେବ । ଇଂରାଜୀରେ ଶିକ୍ଷା ଦିଆଯାଉଥିବାରୁ ଅନେକ ବିଷୟ ଛାତ୍ରଛାତ୍ରୀଙ୍କର ଅବୋଧ୍ୟ ରହୁଛି ଫଳରେ ସେମାନେ ଶୁକବତ୍ କଣ୍ଠସ୍ଥ କରିବାକୁ ବାଧ୍ୟ ହେଉଛନ୍ତି । ମାତୃଭାଷା ମାଧ୍ୟମରେ ଶିକ୍ଷା ଦିଆଗଲେ ସେପରି କଣ୍ଠସ୍ଥ କରିବାର ଆବଶ୍ୟକତା ପଡ଼ିବ ନାହିଁ । ସେମାନେ ବିଷୟବସ୍ତୁକୁ ସହଜରେ ବୁଝିପାରିବେ ଓ ଆୟତ୍ତ କରିପାରିବେ । ଏହାଦ୍ୱାରା ଶିକ୍ଷାର ଗୁଣାତ୍ମକ ମାନ ବୃଦ୍ଧି ପାଇବ । ବର୍ତ୍ତମାନ ଭାରତବର୍ଷ ବ୍ୟତୀତ ପୃଥିବୀର ଅନ୍ୟ କୌଣସି ସଭ୍ୟ ଦେଶ ନାହିଁ ଯେଉଁଠି ବିଶ୍ୱବିଦ୍ୟାଳୟ ଶିକ୍ଷା ବୈଦେଶିକ ଭାଷା ମାଧ୍ୟମରେ ଦିଆଯାଏ ।

ଆଲୋଚ୍ୟ ବିଷୟ ଉଚ୍ଚଶିକ୍ଷା କ୍ଷେତ୍ରରେ ଆଞ୍ଚଳିକଭାଷା ମାଧ୍ୟମରେ ଶିକ୍ଷା ପ୍ରଚଳନ ନେଇ ଶିକ୍ଷା କମିଶନଙ୍କ ସୁଚିନ୍ତିତ ମତକୁ ଭାରତ ସରକାର ଗ୍ରହଣକଲେ । ୧୯୬୭ ମସିହାରେ ଭାରତର ସବୁ ବିଶ୍ୱବିଦ୍ୟାଳୟ କୁଳପତିମାନଙ୍କର ସମ୍ମିଳନୀରେ ଶିକ୍ଷା କମିଶନଙ୍କ ସୁପାରିଶ ଆଲୋଚିତ ହେଲା ଏବଂ ଏହାର ମୂଳନୀତିକୁ ଗ୍ରହଣ କରିବା ପାଇଁ ସ୍ୱୀକୃତି ପ୍ରଦାନ କରାଗଲା । ୧୯୬୮ ମସିହା ଜାନୁୟାରୀ ୧୮ ତାରିଖ ଦିନ ପାର୍ଲିଆମେଣ୍ଟରେ ଉକ୍ତ ଜାତୀୟ ଶିକ୍ଷାନୀତି ସର୍ବସମ୍ମତିକ୍ରମେ ଗୃହୀତ ହେଲା ।

ଏହା ପରେ କଲେଜ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ପାଠ୍ୟପୁସ୍ତକ ପ୍ରଣୟନ କରିବା ପାଇଁ କେନ୍ଦ୍ରସରକାର ସବୁ ପ୍ରଦେଶକୁ ଆର୍ଥିକ ସାହାଯ୍ୟ ପ୍ରଦାନ କଲେ । ତଦନୁସାରେ ୧୯୭୦ ମସିହା ମାର୍ଚ୍ଚ ୧ ତାରିଖ ଦିନ ଆମ ଓଡ଼ିଶାରେ ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ପ୍ରତିଷ୍ଠା କରାଗଲା । ଅଦ୍ୟାବଧି ଆମେ ଅନେକଗୁଡ଼ିଏ ଉପାଦେୟ ପାଠ୍ୟପୁସ୍ତକ ପ୍ରକାଶ କରି ସାରିଲୁଣି । କଲେଜରେ ଯେତେଶୀଘ୍ର ଆଞ୍ଚଳିକ ଭାଷା ମାଧ୍ୟମରେ ଅଧ୍ୟାପକମାନେ ଶିକ୍ଷା ଦେବେ ଓ ଛାତ୍ରଛାତ୍ରୀମାନେ ଆଞ୍ଚଳିକ ଭାଷାରେ ଉତ୍ତର ଲେଖିବେ ସେତେଶୀଘ୍ର ଆମର ଜାତୀୟ ଶିକ୍ଷାନୀତି ସଫଳ ହେବ ଏବଂ ବହୁ ଅର୍ଥ ଓ ଶ୍ରମବ୍ୟୟରେ ପ୍ରଣୀତ ଏହି କଲେଜ ପାଠ୍ୟପୁସ୍ତକଗୁଡ଼ିକର ଜାତୀୟ ସଦୁପଯୋଗ ହେବ ।

ଆଲୋଚ୍ୟ ପୁସ୍ତକ ''ଆଇନ୍‌ଷ୍ଟାଇନ୍'' ଟିକୁ ରଚନା କରିଛନ୍ତି ଲବ୍ଧପ୍ରତିଷ୍ଠ ଅଧ୍ୟାପକ ଶ୍ରୀ ସୁବୋଧ କୁମାର ନନ୍ଦ । ଏହାର ସମୀକ୍ଷା କରିଛନ୍ତି ସୁନାମଧନ୍ୟ ଅଧ୍ୟାପକ ଡକ୍ଟର କୃଷ୍ଣପ୍ରସାଦ ମିଶ୍ର ଓ ଭାଷା ସଂଶୋଧନ କରିଛନ୍ତି ଏହି ସଂସ୍ଥାର ଭାଷା ବିଶେଷଜ୍ଞ ଶ୍ରୀମତୀ ହରିପ୍ରିୟା ମହାପାତ୍ର ।

ସମସ୍ତଙ୍କୁ ମୁଁ ସଂସ୍ଥା ତରଫରୁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି ।

୬/୨୫, ଶହୀଦ ନଗର ଭୁବନେଶ୍ୱର,
ଜୁନ ୧, ୧୯୭୮

**ଗଦାଧର ମିଶ୍ର**
ନିର୍ଦ୍ଦେଶକ
ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ
ପ୍ରକାଶନ ସଂସ୍ଥା

# ପ୍ରାକ୍‌କଥନ

ଗ୍ରୀକ୍ ଦର୍ଶନ ଇତିହାସରେ ଆରିଷ୍ଟଟଲ୍ ଏକ ଉଜ୍ଜ୍ୱଳତମ ତାରକା । ସେ ଏକାଧାରରେ ଦାର୍ଶନିକ, ରାଜନୀତିଜ୍ଞ, ଜ୍ୟୋତିର୍ବିଦ, ନୀତିଜ୍ଞ ଓ ମନୋବିଜ୍ଞାନୀ ଥିଲେ । ଏହି ବିଶାଳ ଜ୍ଞାନର ଅଧିକାରୀ ଆରିଷ୍ଟଟଲ୍ ପ୍ରାଚୀନ ଗ୍ରୀକ୍ ଇତିହାସରେ ଏକ ଅନ୍ତର୍ଜାତୀୟ ବ୍ୟକ୍ତିତ୍ୱ । ପ୍ରାୟ ୨୦ ବର୍ଷ କାଳ ଏଥେନ୍ସ ନଗରୀରେ ସେ ପ୍ଲେଟୋଙ୍କର ଏକାଡେମୀରେ ଜୀବନ ଉତ୍ସର୍ଗ କରିଥିଲେ । ପ୍ଲେଟୋଙ୍କର ମୃତ୍ୟୁପରେ ପ୍ରାୟ ୧୨ ବର୍ଷ କାଳ ଆରିଷ୍ଟଟଲ ସ୍ୱ ପ୍ରତିଷ୍ଠିତ ଏକାଡେମୀରେ ଗବେଷଣା ଓ ବିଭିନ୍ନ ଗ୍ରନ୍ଥ ରଚନାରେ ନିଜର ସମୟ ଅତିବାହିତ କରିଥିଲେ । ତାଙ୍କର ରଚିତ ଅଧିକାଂଶ ଗ୍ରନ୍ଥ ତାଙ୍କର ମୃତ୍ୟୁପରେ ପ୍ରକାଶ ପାଇଥିଲା ।

ଆରିଷ୍ଟଟଲ ପ୍ରଣୀତ ଗ୍ରନ୍ଥାବଳୀ ଗ୍ରୀକ୍ ଭାଷାରେ ରଚିତ ହୋଇଥିଲା । ଆରିଷ୍ଟଟଲଙ୍କର ମୃତ୍ୟୁର ବହୁବର୍ଷ ପରେ କେତୋଟି ଗ୍ରନ୍ଥ ଯଥା :—ନୀତିଶାସ୍ତ୍ର, ରାଜନୀତି-ଶାସ୍ତ୍ର ଇତ୍ୟାଦି ଇଂରାଜୀରେ ଅନୁବାଦ କରାଯାଇଥିଲା । ଏଥିକସ୍ ଗ୍ରନ୍ଥରେ ଆରିଷ୍ଟଟଲ ସୁନ୍ଦର ଜୀବନର ବ୍ୟାଖ୍ୟା କରିଛନ୍ତି ଏହା ଉଦ୍ଦେଶ୍ୟମୂଳକ, ବିଶ୍ଳେଷଣମୂଳକ, ଉତ୍ପତ୍ତି ଓ କ୍ରମବିକାଶ ( Genetic ) ମୂଳକ । ବିଶ୍ୱଦର୍ଶନରେ ଆରିଷ୍ଟଟଲଙ୍କ ସ୍ଥାନ ଅଦ୍ୱିତୀୟ । ପ୍ରାଚୀନ ଗ୍ରୀକ୍ ସଭ୍ୟତା ଓ ସଂସ୍କୃତି ଅଦ୍ୟାବଧି ପାଶ୍ଚାତ୍ୟ ଜଗତ ଓ ପ୍ରାଚ୍ୟ ଜଗତର ଆଦର୍ଶ ରୂପେ ସର୍ବଜନ ଗ୍ରାହ୍ୟ ହୋଇଅଛି ।

ଭାରତୀୟ ବିଶ୍ୱବିଦ୍ୟାଳୟ ସ୍ତରରେ ମାତୃଭାଷା ମାଧ୍ୟମରେ ଶିକ୍ଷାଦାନ ବ୍ୟବସ୍ଥା କରାଯାଇଅଛି । ଭାରତୀୟ ଭାଷା ମାଧ୍ୟମରେ ଆରିଷ୍ଟଟଲଙ୍କର ଦର୍ଶନ ଶାସ୍ତ୍ରକୁ ଅନୁବାଦ କରାଯାଇଥିଲେ ହେଁ ତାଙ୍କର ଦାର୍ଶନିକ ଗୂଢ଼ତତ୍ତ୍ୱଗୁଡ଼ିକର ସୁବୋଧ୍ୟ ଓ ସୁସ୍ପଷ୍ଟ ପ୍ରକାଶନ ହୋଇପାରିନାହିଁ । ଓଡ଼ିଆ ଭାଷା ମାଧ୍ୟମରେ ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଆରିଷ୍ଟଟଲଙ୍କର ଦର୍ଶନକୁ ପ୍ରକାଶ କରିବାରେ ଯେଉଁ ପ୍ରଚେଷ୍ଟା କରିଛନ୍ତି, ସେଥିନିମନ୍ତେ ପ୍ରକାଶନ ସଂସ୍ଥା ଧନ୍ୟବାଦାର୍ହ ।

ମୁଁ ଏହି କ୍ଷୁଦ୍ର ଗ୍ରନ୍ଥରେ ଆରିଷ୍ଟଟଲଙ୍କର ଜାତିବାଦ, ରାଜନୀତିବାଦ, ଦ୍ରବ୍ୟବାଦ, କାର୍ଯ୍ୟକାରଣବାଦ, ଉଦ୍ଦେଶ୍ୟବାଦ, ନୀତିବାଦ, ସୌନ୍ଦର୍ଯ୍ୟ ଓ ଲଳିତ କଳାତତ୍ତ୍ୱକୁ ପାଠକମାନଙ୍କର ସହଜବୋଧ୍ୟ ନିମନ୍ତେ ଯଥାସାଧ୍ୟ ଚେଷ୍ଟା କରିଅଛି । ଦାର୍ଶନିକ ଶବ୍ଦ ପ୍ରୟୋଗ କରିବା ସମୟରେ ସେ ସବୁ ଶବ୍ଦର ମୂଳ ଇଂରାଜୀ ଶବ୍ଦ ବ୍ୟବହାର କରି

ବକ୍ତବ୍ୟକୁ ସରଳ ଓ ବୋଧଗମ୍ୟ କରିବାରେ ପ୍ରୟାସ କରିଅଛୁ । ସମ୍ୟକ ଉପଲବ୍ଧି ନିମନ୍ତେ ବିଭିନ୍ନ ଅଧ୍ୟାୟରେ ଆରିଷ୍ଟଟଲ ଦର୍ଶନ ସହିତ ପ୍ଲେଟୋଙ୍କର ଦର୍ଶନର ଏକ ତୁଳନାତ୍ମକ ସମୀକ୍ଷା କରିଅଛୁ ।

ନିରନ୍ତର ପ୍ରଚେଷ୍ଟା ଫଳରେ ଏହି ପୁସ୍ତକଟି ରଚନା କରିବାରେ ସମର୍ଥ ହୋଇଅଛୁ । ପାଠ୍ୟପୁସ୍ତକ ପ୍ରଣୟନ ସଂସ୍ଥାର ନିର୍ଦ୍ଦେଶକ ଡକ୍ଟର ଗଦାଧର ମିଶ୍ରଙ୍କର ଉଦ୍ଦୀପନା ଓ ଉତ୍ସାହ ଫଳରେ ଏହି ପୁସ୍ତକ ପ୍ରକାଶନ ସମ୍ଭବ ହୋଇଅଛି । ମୁଁ ତାଙ୍କ-ଠାରେ ଏଥିନିମନ୍ତେ ବିଶେଷ କୃତଜ୍ଞ । ପୁନଶ୍ଚ ଯେଉଁମାନଙ୍କ ଉଦ୍ଦେଶ୍ୟରେ ଏହି ପୁସ୍ତକଟି ଲିଖିତ ହୋଇଅଛି, ସେମାନେ ଯଥାର୍ଥ ଉପକୃତ ହେଲେ ମୋର ଶ୍ରମ ସାର୍ଥକ ହେବ ଓ ମୁଁ ନିଜକୁ ଧନ୍ୟ ମନେକରିବି ।

**ଶ୍ରୀ ସୁବୋଧ କୁମାର ନନ୍ଦ**

# ସୂଚୀପତ୍ର





# ପ୍ରଥମ ଅଧ୍ୟାୟ

## ଆରିଷ୍ଟଟଲଙ୍କ ଜୀବନ ଓ ରଚନା

ପୃଥିବୀର ଶ୍ରେଷ୍ଠ ଦାର୍ଶନିକମାନଙ୍କ ମଧ୍ୟରେ ଆରିଷ୍ଟଟଲ ଅନ୍ୟତମ । ଗ୍ରୀକ୍ ଦର୍ଶନ ଇତିହାସର ପ୍ଲେଟୋଙ୍କ ପରେ ଆରିଷ୍ଟଟଲଙ୍କ ଆସନ ଅପ୍ରତିଦ୍ୱନ୍ଦ୍ୱୀ ହୋଇ ରହିଅଛି ।

ଆରିଷ୍ଟଟଲ ପ୍ଲେଟୋଙ୍କର ଶିଷ୍ୟ ଥିଲେ ହେଁ ଅନେକ ବିଷୟରେ ସେ ପ୍ଲେଟୋଙ୍କ ମତକୁ ପରିହାର କରି ନିଜର ମତ ପ୍ରତିଷ୍ଠା କରିଛନ୍ତି । ଏହି ଦୁଇ ଦାର୍ଶନିକଙ୍କ ଚିନ୍ତାଧାରା ଆଜି ପର୍ଯ୍ୟନ୍ତ ପୃଥିବୀର ଚିନ୍ତାଧାରାକୁ ପ୍ରଭାବିତ କରୁଅଛି ।

ଆରିଷ୍ଟଟଲଙ୍କ ଥ୍ରେସର ଷ୍ଟାଗୋରିଆରେ ଖ୍ରୀଷ୍ଟପୂର୍ବ ୩୮୪ରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ମାସିଡ଼ୋନର ରାଜା ଦ୍ୱିତୀୟ ଆମେଣ୍ଟସଙ୍କର ଗୃହ ଚିକିତ୍ସକ ଥିଲେ । ଆରିଷ୍ଟଟଲ ୧୭ ବର୍ଷ ବୟସରେ ଶିକ୍ଷା ଲାଭ ନିମନ୍ତେ ଏଥେନ୍ସ ଆସିଥିଲେ ଓ ଏହିଠାରେ ହିଁ ତାଙ୍କର ପ୍ଲେଟୋଙ୍କ ସହିତ ସାକ୍ଷାତ ହୋଇଥିଲା ।

ସେହି ସମୟରେ ପ୍ଲେଟୋ ଏଥେନ୍ସରେ ତାଙ୍କର ଏକାଡେମୀ ଆରମ୍ଭ କରି-ଥିଲେ । ଆରିଷ୍ଟଟଲ ଏହି ଏକାଡେମୀର ଅନ୍ୟତମ ଶିଷ୍ୟ ହୋଇ ଦୀର୍ଘ ୨୦ ବର୍ଷ ପ୍ଲେଟୋଙ୍କର ନିୟମିତ ଶାସ୍ତ୍ର ଆଲୋଚନାର ସଙ୍ଗୀ ହୋଇ ବାସ କରିଥିଲେ । ପ୍ଲେଟୋଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଆରିଷ୍ଟଟଲ ଏହି ଏକାଡେମୀ ସହିତ ଜଡ଼ିତ ଥିଲେ ।

ପ୍ଲେଟୋଙ୍କର ମୃତ୍ୟୁର ଅବ୍ୟବହିତ ପରେ ଆରିଷ୍ଟଟଲ ଏଥେନ୍ସ ପରିତ୍ୟାଗ କରି ଅସସ୍ ନାମକ ସହରରେ ଏକାଡେମୀର ଶାଖା ପ୍ରତିଷ୍ଠା କଲେ । ଏହି ସ୍ଥାନରେ ଥିବା ସମୟରେ ତାଙ୍କର ବିବାହ ହୋଇଥିଲା । ଆସସ୍ ର ରାଜା ଆଟାର୍ଣିୟସଙ୍କ ପାଳିତା କନ୍ୟା ପିଥିୟାସ୍ଙ୍କୁ ସେ ବିବାହ କରିଥିଲେ ।

ଖ୍ରୀ ପୂ ୩୪୩ ରେ ମ୍ୟାସିଡୋନ୍ ର ରାଜା ଫିଲିପ୍ ତାଙ୍କର ପୁତ୍ର ଆଲେକ୍-ଜାଣ୍ଡରଙ୍କୁ ଶିକ୍ଷାଦାନ କରିବା ନିମନ୍ତେ ଆରିଷ୍ଟଟଲଙ୍କୁ ଅନୁରୋଧ କରିଥିଲେ । ଏହି ଆଲେକଜାଣ୍ଡର ପରେ ଦିଗ୍ବିଜୟୀ ବୀର ଆଲେକଜାଣ୍ଡର ରୂପେ ଖ୍ୟାତ ହୋଇଥିଲେ ।

ଖ୍ରୀ:ପୂ: ୩୩୫ରେ ଆରିଷ୍ଟଟଲ୍ ଏଥେନ୍ସକୁ ଫେରି ଆସିଥିଲେ । ଏହିଠାରେହିଁ ସେ ତାଙ୍କର ନିଜର ଶିକ୍ଷାୟତନ ସ୍ଥାପନ କଲେ । ଏହି ଶିକ୍ଷାୟତନରେ ସେ ଗୋଟିଏ ପ୍ରସିଦ୍ଧ ପାଠାଗାର ମଧ୍ୟ ସ୍ଥାପନ କରିଥିଲେ । ଏଠାରେ ଶିକ୍ଷକମାନେ ନିୟମିତ ଶାସ୍ତ୍ର ସମ୍ବନ୍ଧୀୟ ଆଲୋଚନା ଓ ବକ୍ତୃତା ଦେଉଥିଲେ । ଗବେଷକମାନେ ଗବେଷଣା କାର୍ଯ୍ୟରେ ଲିପ୍ତ ରହୁଥିଲେ । ଆରିଷ୍ଟଟଲ୍ ତାଙ୍କର ଅଧିକାଂଶ ବିଶ୍ୱ ବିଖ୍ୟାତ ଗ୍ରନ୍ଥ ଏହିଠାରେ ହିଁ ଲେଖିଥିଲେ ।

ଖ୍ରୀ:ପୂ: ୩୨୩ରେ ଆଲେକଜାଣ୍ଡରଙ୍କ ଦେହତ୍ୟାଗ କଲାପରେ ଏଥେନ୍ସବାସୀମାନେ ଆଲେକଜାଣ୍ଡରଙ୍କ ସହିତ ଘନିଷ୍ଠ ସମ୍ପର୍କ ଥିବା ବ୍ୟକ୍ତିମାନଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ ଓ ନାନାବିଧ ଅତ୍ୟାଚାର, ନିର୍ଯାତନା ଭୟରେ ଆରିଷ୍ଟଟଲ ଇଉବୋଇଆ ଅନ୍ତର୍ଗତ ଖାଲସିସ୍‌କୁ ଖାଲିଯାଇଥିଲେ । ଖାଲସିସ୍‌ରେ ଥିବା ସମୟରେ ହିଁ ସେ ବାଷଠି ବର୍ଷ ବୟସରେ ଖ୍ରୀ:ପୂ: ୩୨୨ରେ ଦେହତ୍ୟାଗ କରିଥିଲେ ।

ଆରିଷ୍ଟଟଲଙ୍କ ରଚନାବଳୀକୁ ମୁଖ୍ୟତଃ ତିନିଗୋଟି ପର୍ଯ୍ୟାୟରେ ଭାଗ କରାଯାଇଛି । ପ୍ଲେଟୋଙ୍କ ସଙ୍ଗେ ବସବାସ ବେଳେ ଲେଖିଥିବା ଗ୍ରନ୍ଥସମୂହ ପ୍ରଥମ ପର୍ଯ୍ୟାୟଭୁକ୍ତ । ଏହା କଥୋପକଥନ ଢଙ୍ଗରେ ଲିଖିତ ।

ଆସସ୍‌ରେ ରହୁଥିବାବେଳେ ଲିଖିତ ଗ୍ରନ୍ଥଗୁଡ଼ିକ ଦ୍ୱିତୀୟ ପର୍ଯ୍ୟାୟଭୁକ୍ତ ଏବଂ ଏଥେନ୍ସରେ ନିଜ ଶିକ୍ଷାୟତନରେ ରହି ଯେଉଁ ସବୁ ଗ୍ରନ୍ଥ ଲେଖିଥିଲେ ତାହା ତୃତୀୟ ପର୍ଯ୍ୟାୟଭୁକ୍ତ । ଆରିଷ୍ଟଟଲଙ୍କ ରଚିତ ଗ୍ରନ୍ଥାବଳୀ ମୁଖ୍ୟତଃ ଦୁଇଟି ଶ୍ରେଣୀରେ ବିଭକ୍ତ । (୧) କଥୋପକଥନ ଢଙ୍ଗରେ ରଚିତ ଗ୍ରନ୍ଥାବଳୀ, (୨) ଶିକ୍ଷାୟତନରେ ଦେଇଥିବା ବକ୍ତୃତା ଭିତ୍ତିରେ ରଚିତ ହୋଇଥିବା ଗ୍ରନ୍ଥାବଳୀ ।

ପ୍ରଥମଶ୍ରେଣୀର ଗ୍ରନ୍ଥାବଳୀରେ ପ୍ଲେଟୋଙ୍କ ପ୍ରଭାବ ସୁସ୍ପଷ୍ଟ । ଏହି ଗ୍ରନ୍ଥର ରଚନା ଶୈଳୀ ମଧ୍ୟ ପ୍ରାଞ୍ଜଳ; କିନ୍ତୁ ଦ୍ୱିତୀୟ ଶ୍ରେଣୀ ଗ୍ରନ୍ଥାବଳୀ ବକ୍ତୃତାଗୁଡ଼ିକର ସମଷ୍ଟି ହୋଇଥିବାରୁ ଏହା ମଧ୍ୟରେ ସାହିତ୍ୟିକ ମାଧୁର୍ଯ୍ୟ ନାହିଁ ।

ଆତ୍ମା ସମ୍ବନ୍ଧରେ ଇଉଡ଼ମାସ୍‌ର କଥୋପକଥନ, ପ୍ଲେଟୋଙ୍କର ଜାତି ସମ୍ପର୍କିତ ମତବାଦ ବିଷୟରେ ଲିଖିତ ଗ୍ରନ୍ଥ 'ଦ ପୋଏଟିକ୍ ପୋଟିକାସ୍', ପ୍ରକୃତି ସମ୍ପର୍କିତ ଗ୍ରନ୍ଥ ପ୍ରଭୃତି, ରଚନା ପ୍ରଥମ ପର୍ଯ୍ୟାୟଭୁକ୍ତ । ଏହି ରଚନା ମାନଙ୍କରେ ଆରିଷ୍ଟଟଲ ମୁଖ୍ୟତଃ ପ୍ଲେଟୋଙ୍କର ମତ ସମର୍ଥନ କରିଅଛନ୍ତି ।

ଆରିଷ୍ଟଟଲ୍‌ଙ୍କ ଦ୍ୱିତୀୟ ପର୍ଯ୍ୟାୟ ଗ୍ରନ୍ଥ ମଧ୍ୟରେ ଦର୍ଶନ ସମ୍ବନ୍ଧରେ କଥୋପ-କଥନ, ଅଧିବିଦ୍ୟା, ନୀତିଶାସ୍ତ୍ର ଏବଂ ଆଦର୍ଶ ରାଷ୍ଟ୍ର ସମ୍ପର୍କିତ ଆଲୋଚନା ବକ୍ତୃତ୍ୱ ପ୍ରଭୃତି କେତେକ ଗ୍ରନ୍ଥ ସୁବିଖ୍ୟାତ ଅଟେ । ଏହି ଗ୍ରନ୍ଥମାନଙ୍କରେ ଆରିଷ୍ଟଟଲ ପ୍ଲେଟୋଙ୍କର ମତବାଦକୁ ସମାଲୋଚନା କରିଛନ୍ତି ।

ତୃତୀୟ ପର୍ଯ୍ୟାୟ ଗ୍ରନ୍ଥମାନଙ୍କରେ ଆରିଷ୍ଟଟଲ ତାଙ୍କର ସ୍ୱାଧୀନ ମତବାଦକୁ ବିଶେଷ ଭାବେ ପରିସ୍ଫୁଟ କରିଅଛନ୍ତି । ଏହି ପର୍ଯ୍ୟାୟରେ ହିଁ ଆରିଷ୍ଟଟଲଙ୍କ ପ୍ରମାଣଶାସ୍ତ୍ର 'ଅର୍ଗାନନ୍' ପ୍ରକାଶିତ ହୋଇଥିଲା । ଏହି 'ଅର୍ଗାନନ୍'ରେ ଆରିଷ୍ଟଟଲ୍‌ଙ୍କ ସର୍ବପ୍ରଥମ ପ୍ରମାଣଶାସ୍ତ୍ର ରଚିତ ହୋଇଅଛି । ଏହି ଗ୍ରନ୍ଥ ଦ୍ୱାରାହିଁ ଆରିଷ୍ଟଟଲ୍ ଯେ ପ୍ରମାଣ ଶାସ୍ତ୍ରର ଜନକ ତାହା ପ୍ରମାଣିତ ହୋଇଅଛୁ ।

ବିଭିନ୍ନ ସମୟରେ ଦେଇଥିବା ବକ୍ତୃତାମାଳାର କେତେକ ଅଂଶ ମଧ୍ୟ ଏହି ପର୍ଯ୍ୟାୟରେ ପ୍ରକାଶିତ ହୋଇଥିଲା । ତନ୍ମଧ୍ୟରୁ ନୀତିବିଜ୍ଞାନ ସମ୍ବନ୍ଧୀୟ ଗ୍ରନ୍ଥ 'ଦ ମ୍ୟାଗନା-ମରାଲିଆ', 'ଦ ନିକୋମ୍ୟା କିୟାନ୍' ଏବଂ ରାଷ୍ଟ୍ର ବିଜ୍ଞାନ ସମ୍ବନ୍ଧୀୟ 'ଦ ପଲିଟିକ୍ସ' ପ୍ରଧାନ ଗ୍ରନ୍ଥ ଅଟେ ।

କାବ୍ୟବିଦ୍ୟା ଓ ସାହିତ୍ୟ ତତ୍ତ୍ୱ ସମ୍ବନ୍ଧୀୟ ଗ୍ରନ୍ଥ 'ଦ ରେଟୋରିକ୍' ଓ 'ଦ ପୋଏଟିକ୍ସ ଦୁଇଟି ବିଶ୍ୱବିଖ୍ୟାତ ଗ୍ରନ୍ଥ ଅଟେ ।

ବିଖ୍ୟାତ ରାଜନୀତିଜ୍ଞ ମ୍ୟାକ୍‌ସେ ଆରିଷ୍ଟଟଲଙ୍କ ବିଷୟରେ କହିଛନ୍ତି, "Countless admires have aclaimed Aristotle as the Master of them that know".



# ଦ୍ୱିତୀୟ ଅଧ୍ୟାୟ

## ପ୍ଲେଟୋ ଓ ଆରିଷ୍ଟଟଲ୍

ପ୍ରାଚୀନ ଗ୍ରୀକ୍ ଦାର୍ଶନିକ ପ୍ଲେଟୋ ଏବଂ ଆରିଷ୍ଟଟଲ ପୃଥିବୀର ଦାର୍ଶନିକ-ମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ବୋଲି ବିବେଚିତ । ଉଭୟେ ମୁଖ୍ୟତଃ ପ୍ରାଚୀନ ଦାର୍ଶନିକ ଭାବେ ଖ୍ୟାତିଲାଭ କରିଥିଲେହେଁ ପୃଥିବୀର ସବୁକାଳରେ ସର୍ବଶ୍ରେଷ୍ଠ ଦାର୍ଶନିକମାନଙ୍କ ମଧ୍ୟରେ ଅପ୍ରତିଦ୍ୱନ୍ଦୀ ଦାର୍ଶନିକ ଭାବରେ ପ୍ରତିଷ୍ଠିତ ।

ଆରିଷ୍ଟଟଲ ପ୍ଲେଟୋଙ୍କର ଶିଷ୍ୟଥିଲେ । ସୁତରାଂ ଉଭୟଙ୍କର ଚିନ୍ତାଧାରାରେ ସାଦୃଶ୍ୟ ଥିଲେ ମଧ୍ୟ କେତେକାଂଶରେ ଆରିଷ୍ଟଟଲ ପ୍ଲେଟୋଙ୍କ ଚିନ୍ତାଧାରାଠାରୁ ବିଚ୍ଛିନ୍ନ ହୋଇ ନିଜର ସ୍ୱାଧୀନ ମତବାଦ ପ୍ରତିଷ୍ଠା କରିଛନ୍ତି ।

କୋପଲ୍‌ଷ୍ଟୋନ୍ କହିଛନ୍ତି ଯେ ପ୍ଲେଟୋଙ୍କ ଦର୍ଶନକୁ ବାଦ ବୋଲି ଗ୍ରହଣ କଲେ ଆରିଷ୍ଟଟଲଙ୍କ ମତବାଦକୁ ପ୍ରତିବାଦ ବୋଲି କୁହାଯାଇପାରେ ।

ପ୍ଲେଟୋ 'ଜାତି' ବା 'ସତ୍ତା'କୁ ଗୁରୁତ୍ୱ ଦେବା ସ୍ଥଳେ ଆରିଷ୍ଟଟଲ 'ପରିବର୍ତ୍ତନ' ଏବଂ 'ଗତିବାଦ' ଉପରେ ଗୁରୁତ୍ୱ ଦେଇଛନ୍ତି । ଅବଶ୍ୟ ଏ କଥାର ଏହି ଅର୍ଥ ନୁହେଁ ଯେ ପ୍ଲେଟୋ 'ପରିବର୍ତ୍ତନ' ବା ଗତିକୁ ଇନ୍ଦ୍ରିୟଗ୍ରାହ୍ୟ ଜଗତରେ ସ୍ୱୀକାର କରିନାହାନ୍ତି କିମ୍ବା ଆରିଷ୍ଟଟଲ 'ଧ୍ରୁବ ସତ୍ତା' କୁ ଅସ୍ୱୀକାର କରିଛନ୍ତି ।

ସକ୍ରେଟିସ୍‌ଙ୍କ ପରି ପ୍ଲେଟୋ ମଧ୍ୟ ନୈତିକ ବଚନର ପ୍ରାଧାନ୍ୟ ସ୍ୱୀକାର କରିଯାଇଛନ୍ତି ଏବଂ ନୈତିକ ମୂଲ୍ୟର ପ୍ରକୃତି ସମ୍ବନ୍ଧରେ ବିଶଦ ଆଲୋଚନା କରିଛନ୍ତି । ପ୍ଲେଟୋଙ୍କ ମତରେ ନୈତିକ ପ୍ରତ୍ୟୟ ଏବଂ ନୈତିକ ବଚନ ଯଦି ବିଷୟଗତ ହୁଏ ତାହାହେଲେ ସେମାନଙ୍କ ମଧ୍ୟରେ ନିଶ୍ଚୟ କୌଣସି ବସ୍ତୁଗତ ଭିତ୍ତି ଥିବା ସ୍ୱାଭାବିକ । ନୈତିକ ମୂଲ୍ୟ ମୂଳତଃ ନୈତିକ ଆଦର୍ଶକୁ ହିଁ ବୁଝାଇଥାଏ । କାରଣ ମନୁଷ୍ୟର ଆଚରଣ ମଧ୍ୟରେ ନୈତିକ ମୂଲ୍ୟ ରୂପାୟିତ ହୋଇଥାଏ । ସୁତରାଂ ନୈତିକ ମୂଲ୍ୟର ବିଷୟତା ପଶୁଜଗତ ବିଷୟତା ଠାରୁ ଭିନ୍ନ । ଏହି ବିଷୟତା ଆଦର୍ଶ ବିଷୟତା ବା ଆଦର୍ଶ ଜଗତର ବିଷୟତା ଅଟେ । ପ୍ଲେଟୋଙ୍କ ମତରେ ଜଡଜଗତ ପରିବର୍ତ୍ତନଶୀଳ; କିନ୍ତୁ ନୈତିକ ମୂଲ୍ୟ ସନାତନ ଓ ଧ୍ରୁବ । ସୁତରାଂ ପ୍ଲେଟୋଙ୍କ ମତାନୁସାରେ ନୈତିକ ମୂଲ୍ୟ ଆଦର୍ଶରୂପୀ ହେଲେହେଁ ବସ୍ତୁଗତ । ପୁନଶ୍ଚ ବିଭିନ୍ନ କ୍ଷେତ୍ରରେ

ବିଭିନ୍ନ ନୈତିକ ମୂଲ୍ୟ ଏକ ପରମକଲ୍ୟାଣ ବା ପରିପୂର୍ଣ୍ଣତାର ସମଅଂଶୀ ଏବଂ ଏହି ନୈତିକ ମୂଲ୍ୟ ସେହି ପରମକଲ୍ୟାଣ ବା ପରିପୂର୍ଣ୍ଣତାରୁ ହିଁ ସୃଷ୍ଟ ହୋଇଅଛି । ଏହି କଲ୍ୟାଣ ବା ପରିପୂର୍ଣ୍ଣତା ସୂର୍ଯ୍ୟଙ୍କ ସଙ୍ଗେ ତୁଳନୀୟ । (1)

ଏହିଭଳି 'ସକ୍ରେଟିସ୍'ଙ୍କର ନୀତିଶାସ୍ତ୍ର ଭିତ୍ତିରେ ପ୍ଲେଟୋ ଏକ ବିଶେଷ ପ୍ରକାରର ଅଧିବିଦ୍ୟା ଉପସ୍ଥାପନ କରିଛନ୍ତି । ଏହି ମତବାଦକୁ ସେ ଅନ୍ତୁର ବସ୍ତୁର କ୍ଷେତ୍ରରେ ପ୍ରୟୋଗ କରି କହିଛନ୍ତି ଯେ ଯେପରି ବିଭିନ୍ନ ନୈତିକ ମୂଲ୍ୟ ପରମ ମୂଲ୍ୟ ବା କଲ୍ୟାଣର ଅଂଶଭାଗୀ ସେହିପରି ବିଶେଷ ବିଶେଷ ବସ୍ତୁ ମଧ୍ୟ ସେହି ବିଶେଷ ବିଶେଷ ଜାତିର ଅଂଶଭାଗୀ ଅଟେ । ପୁନଶ୍ଚ ପ୍ଲେଟୋଙ୍କ ମତରେ ବ୍ୟକ୍ତି ଜାତିର ଅଂଶ ଭାଗୀ ଅର୍ଥ ବ୍ୟକ୍ତି ଜାତିର ଅନୁକରଣ ମାତ୍ର । ଫଳରେ ଏକ ପକ୍ଷରେ 'ଜାତି' ଓ ଅନ୍ୟ ପକ୍ଷେ 'ବ୍ୟକ୍ତି' ମଧ୍ୟରେ ଏକ ଦ୍ୱୈତଭାବରେ ସୃଷ୍ଟି ହୋଇଅଛି । ଏହାକୁ ପ୍ଲେଟୋଙ୍କର ଦାର୍ଶନିକ ଦ୍ୱୈତବାଦ ବୋଲି କୁହାଯାଏ । ସ୍ପଷ୍ଟତଃ ପ୍ଲେଟୋଙ୍କ ଦର୍ଶନରେ 'ଧ୍ରୁବ ତତ୍ତ୍ୱ' ସତ୍ୟ ଏବଂ ପରିବର୍ତ୍ତନଶୀଳ ବ୍ୟକ୍ତି 'ଧ୍ରୁବ ତତ୍ତ୍ୱ' ବା 'ଜାତି' ର ପ୍ରତିଚ୍ଛବି ମାତ୍ର । ସୁତରାଂ ଏହା ମିଥ୍ୟା ଅଟେ । 'ଧ୍ରୁବ ତତ୍ତ୍ୱ'ର ପରିବର୍ତ୍ତନ ନାହିଁ, ଉଦ୍ଭବ ନାହିଁ କି ବିନାଶ ମଧ୍ୟ ନାହିଁ । ଦାର୍ଶନିକ ହିସାବରେ ପ୍ଲେଟୋ 'ଧ୍ରୁବ ତତ୍ତ୍ୱ'କୁ ଯେତେ ଗୁରୁତ୍ୱ ଦେଇଛନ୍ତି ପରିବର୍ତ୍ତନଶୀଳ 'ବ୍ୟକ୍ତିକୁ' ସେତେ ଦେଇ ନାହାନ୍ତି ।

କେତେକ ସମାଲୋଚକଙ୍କ ମତାନୁସାରେ ଆରିଷ୍ଟଟଲ୍‌ଙ୍କ 'ଅଧିବିଦ୍ୟା'ର ହେତୁ ଶୃଙ୍ଖ ତତ୍ତ୍ୱ, ସମସ୍ତ ପରିବର୍ତ୍ତନର ନ୍ୟାୟାତ୍ମକ ଅପରିଣାମ ଆଦି କାରଣ ବା ପ୍ରବର୍ତ୍ତକ ଓ ମନୁଷ୍ୟର ସର୍ବଶ୍ରେଷ୍ଠ କାର୍ଯ୍ୟ ଅପରିବର୍ତ୍ତନୀୟ ସମ୍ବନ୍ଧୀୟ ଉପପତ୍ତିକ ମନନ, ପ୍ରଭୃତି ମତବାଦ ପ୍ରକୃତ କରି କେବଳ ପ୍ଲେଟୋଙ୍କ ମତବାଦର ପ୍ରତିଧ୍ୱନି ମାତ୍ର କରିଛନ୍ତି । ସୁତରାଂ ପ୍ଲେଟୋଙ୍କ ମତବାଦକୁ ବାଦ କହିବା ସ୍ଥଳେ ଆରିଷ୍ଟଟଲ୍‌ଙ୍କ ଦର୍ଶନ ସ୍ୱୀକାର କହିବା ଅପ୍ରୟୋଜନୀୟ ଏବଂ ଅଯୌକ୍ତିକ ।

---

(1) These moral values have a common share in goodness or perfection, sothat they are rightly said to participate in, to derive their goodness or perfection from the supreme ideal essence, absolute goodness or perfection, the idea of the good, the sun, of the ideal world.

*Copleston*

ବାସ୍ତବରେ ପ୍ଲେଟୋଙ୍କ ସହିତ ଆରିଷ୍ଟଟଲଙ୍କ ଚିନ୍ତାଧାରାର ଯେଉଁ ସାଦୃଶ୍ୟ ଅଛି ତାହା କେବଳ ଆରିଷ୍ଟଟଲଙ୍କ ଦର୍ଶନରେ ପ୍ଲେଟୋଙ୍କ ପ୍ରଭାବ ମାତ୍ର । ଆରିଷ୍ଟଟଲ ଯେଉଁଠା ର ନିଜ ମତ ଦେଇଛନ୍ତି ସେଠାରେ ସେ ପ୍ଲେଟୋଙ୍କ ଠାରୁ ସମ୍ପୂର୍ଣ୍ଣ ଭିନ୍ନ ମତବାଦ ପୋଷଣ କରିଛନ୍ତି । ଆରିଷ୍ଟଟଲଙ୍କ ଦର୍ଶନରେ ସେହି ମତବାଦକୁ ଭିତ୍ତି କରି ପ୍ଲେଟୋଙ୍କ ଦର୍ଶନକୁ 'ବାଦ' ଓ ଆରିଷ୍ଟଟଲଙ୍କ ଦର୍ଶନକୁ 'ପ୍ରତିବାଦ' ଭାବେ ଆଖ୍ୟା ଦିଆଯାଇ ପାରେ ।

ପ୍ଲେଟୋଙ୍କର ଜାତିବାଦ ତତ୍ତ୍ୱ ବିରୁଦ୍ଧରେ ଆରିଷ୍ଟଟଲଙ୍କ ମୁଖ୍ୟ ଆପତ୍ତି ଏହି ଯେ ପ୍ଲେଟୋଙ୍କ ମତବାଦ ଜାତି ଓ ଇନ୍ଦ୍ରିୟଗ୍ରାହ୍ୟ ବିଷୟ ମଧ୍ୟରେ ଦୁସ୍ତର ବ୍ୟବଧାନ ସୃଷ୍ଟି କରିଥିବା ହେତୁ ଉଭୟଙ୍କ ମଧ୍ୟରେ ବୋଧଗମ୍ୟ କୌଣସି ସମ୍ବନ୍ଧ ସ୍ଥାପନା କରାଯାଇ ନାହିଁ । ତେଣୁ ଆରିଷ୍ଟଟଲ ଜାତିକୁ ବ୍ୟକ୍ତିର 'ଅନ୍ତର୍ବର୍ତ୍ତୀ' ବା 'ଅମୂର୍ତ୍ତବସ୍ତୁ' ନ କହି ଜାତିକୁ 'ବ୍ୟକ୍ତି'ର 'ଅନ୍ତଃସ୍ୟୂତ' ବା 'ମୂର୍ତ୍ତ ବସ୍ତୁ' ଭାବେ ଆଖ୍ୟା ଦେଇଛନ୍ତି । ପୁନଶ୍ଚ ଆରିଷ୍ଟଟଲଙ୍କ 'ପ୍ରାକୃତିକ ଗତି'ର ଉଦ୍ଦେଶ୍ୟମୂଳକ ବ୍ୟାଖ୍ୟା ସମ୍ବନ୍ଧରେ କହିଛନ୍ତି ଯେ 'ଶକ୍ତି' ବା 'ଅବ୍ୟକ୍ତ' ଅବସ୍ଥା ଠାରୁ ଶକ୍ୟ ବା ବ୍ୟକ୍ତ ଅବସ୍ଥାର ପରିଣତି ଓ ଉପାଦାନ ଆକାରର ରୂପାୟନ ହିଁ ପ୍ରାକୃତିକ ଗତିର ଉଦ୍ଦେଶ୍ୟ । ଏହିଭାବରେ ଆରିଷ୍ଟଟଲ 'ପ୍ଲେଟୋ'ଙ୍କ ମତବାଦର ତ୍ରୁଟି ସମାଲୋଚନା କରି ପ୍ଲେଟୋଙ୍କ ଦର୍ଶନର ପ୍ରତିବାଦ ସୃଷ୍ଟି କରିଛନ୍ତି । ପ୍ଲେଟୋ ପରିବର୍ତ୍ତନଶୀଳ ବସ୍ତୁଜଗତ ଯେ ଅସତ୍ୟ ଏହି ମତ ପୋଷଣ କରିବା ସ୍ଥଳେ ଆରିଷ୍ଟଟଲ ପରିବର୍ତ୍ତନଶୀଳ ବସ୍ତୁ ଜଗତର ତାତ୍ପର୍ଯ୍ୟ ସ୍ୱୀକାର କରି 'ପ୍ଲେଟୋ'ଙ୍କ ଉକ୍ତିର ପ୍ରତିବାଦ କରିଛନ୍ତି । ଅବଶ୍ୟ ଏହି ପ୍ରତିବାଦ କରିବାକୁ ଯାଇ ଆରିଷ୍ଟଟଲ ପ୍ଲେଟୋଙ୍କର ଦର୍ଶନ ସମ୍ବନ୍ଧୀୟ ଅନେକ ମୂଲ୍ୟବାନ ତଥ୍ୟ ମଧ୍ୟ ଅସ୍ୱୀକାର କରିଛନ୍ତି ।

ପୁନଶ୍ଚ ଆରିଷ୍ଟଟଲ ପ୍ଲେଟୋଙ୍କର ଈଶ୍ୱରଙ୍କ ବିଧାନ ସମ୍ପର୍କିତ ମତବାଦ ଏବଂ ଜଗତର ଏହି ବିଧାନ କ୍ରିୟାଶୀଳ ଏହି ଧାରଣାକୁ ମଧ୍ୟ ଅସ୍ୱୀକାର କରିଅଛନ୍ତି । 'ପରିବର୍ତ୍ତନଶୀଳତା' ପ୍ରତି ସୁବିଚାର କରିବାକୁ ଯାଇ ଆରିଷ୍ଟଟଲ ହୁଏତ 'ପରିପୂର୍ଣ୍ଣ ବସ୍ତୁ' ବା 'ପରମଧ୍ରୁବ ବସ୍ତୁ'ର ଯଥାର୍ଥ ତାତ୍ପର୍ଯ୍ୟ ଉପଲବ୍ଧି କରିପାରି ନାହାନ୍ତି । ଏହି କାରଣ ଯୋଗୁ ଦାର୍ଶନିକମାନେ ମତ ପୋଷଣ କରନ୍ତି ଯେ ଯଦି ଏପରି କୌଣସି ଦର୍ଶନ ସୃଷ୍ଟି ହୁଏ ଯାହାକି ପରିବର୍ତ୍ତନଶୀଳତା ପ୍ରତି ସୁବିଚାର କରିବ (ଯାହା ଆରିଷ୍ଟଟଲ କରିଛନ୍ତି କିନ୍ତୁ ପ୍ଲେଟୋ କରିନାହାନ୍ତି) ଏବଂ 'ପରିପୂର୍ଣ୍ଣ ବସ୍ତୁ'ର ଯଥାର୍ଥ ତାତ୍ପର୍ଯ୍ୟ ମଧ୍ୟ ଉପଲବ୍ଧି କରିବ (ଯାହା ପ୍ଲେଟୋ କରିଛନ୍ତି କିନ୍ତୁ ଆରିଷ୍ଟଟଲ କରିନାହାନ୍ତି) ତାହାହେଲେ ସେହି ସମନ୍ୱିତ ଦର୍ଶନ ସମସ୍ତଙ୍କର ଗ୍ରହଣ ଯୋଗ୍ୟ ହେବ । ଏହିଠାରେ 'ସମନ୍ୱୟ' ଶବ୍ଦର ଅର୍ଥ ମୁଖ୍ୟତଃ ଅଧିବିଦ୍ୟା ସମ୍ବନ୍ଧୀୟ । କାରଣ ଅନ୍ୟାନ୍ୟ କ୍ଷେତ୍ରର

ଆରିଷ୍ଟଟଲଙ୍କ ପ୍ରମାଣଶାସ୍ତ୍ର ପ୍ରସଙ୍ଗରେ ଏହି ସମନ୍ୱୟର ପ୍ରଶ୍ନ ନାହିଁ । ଆରିଷ୍ଟଟଲଙ୍କ 'ପ୍ରମାଣ ଶାସ୍ତ୍ର' ଏତେ ଉନ୍ନତ ଯେ ତାହା ପାଖରେ ପ୍ଲେଟୋଙ୍କ 'ପ୍ରମାଣ ଶାସ୍ତ୍ର'ର ସମନ୍ୱୟ କଳ୍ପନା କେବଳ ମାତ୍ର ଅର୍ଥହୀନ ।

ପ୍ଲେଟୋ ଓ ଆରିଷ୍ଟଟଲଙ୍କର 'ଅଧିବିଦ୍ୟା' ର ସମନ୍ୱୟ 'ନବ୍ୟ ପ୍ଲେଟୋନିଷ୍ଟ' ମାନଙ୍କ ଦର୍ଶନରେ କିଛିଟା ପରିଲକ୍ଷିତ ହୁଏ । ମଧ୍ୟଯୁଗୀୟ ପାଦ୍ରୀ ଦାର୍ଶନିକମାନଙ୍କ ଚିନ୍ତାଧାରାରେ ଏହି ସମନ୍ୱୟର ଅନୁବର୍ତ୍ତନ ଦୃଷ୍ଟ ହୁଏ ଏବଂ ଆଧୁନିକ ଯୁଗର ହେଗେଲ୍ ଙ୍କ ଦର୍ଶନରେ ଏହି ସମନ୍ୱୟର ଏକ ପରିପୂର୍ଣ୍ଣ ରୂପ ପ୍ରତ୍ୟକ୍ଷ କରାଯାଏ ।

# ତୃତୀୟ ଅଧ୍ୟାୟ

## ଆରିଷ୍ଟଟଲଙ୍କ ପ୍ରମାଣଶାସ୍ତ୍ର

ଆରିଷ୍ଟଟଲଙ୍କୁ ପ୍ରମାଣଶାସ୍ତ୍ରର ଜନକ ବୋଲି କୁହାଯାଏ । ଏହି ସମ୍ପର୍କରେ ପ୍ରୋଫେସର ବର୍ଟ୍ରାଣ୍ଡ ରସେଲ୍ କହନ୍ତି ଆରିଷ୍ଟଟଲଙ୍କ ଚିନ୍ତାଧାରାର ପ୍ରଭାବ ପୃଥିବୀର ବିଭିନ୍ନ କ୍ଷେତ୍ରରେ ପରିଲକ୍ଷିତ ହେଲେହେଁ 'ପ୍ରମାଣ ଶାସ୍ତ୍ର'ରେ ଏହି ଚିନ୍ତାଧାରାର ପ୍ରଭାବ ସର୍ବାଧିକ । ରସେଲଙ୍କ ଉକ୍ତି ଦ୍ୱାରାହିଁ ଆରିଷ୍ଟଟଲଙ୍କ ପ୍ରମାଣଶାସ୍ତ୍ରର ମୂଲ୍ୟାୟନ ସୁସ୍ପଷ୍ଟ ।

ଆରିଷ୍ଟଟଲଙ୍କ ପ୍ରମାଣଶାସ୍ତ୍ରକୁ ମୁଖ୍ୟତଃ ଆକାରଗତ ବୋଲି କୁହାଯାଏ । କାରଣ ଆରିଷ୍ଟଟଲ ପ୍ରଧାନତଃ ପ୍ରମାଣର ବିଭିନ୍ନ ଆକାର ନେଇ ଆଲୋଚନା କରିଛନ୍ତି ।

ପ୍ରମାଣଶାସ୍ତ୍ରରେ ଆରିଷ୍ଟଟଲଙ୍କ ମୁଖ୍ୟ ଅବଦାନ ନିବ୍ୟସ୍ତ ବା ନିଦେଶୀ ଅନୁମାନ (Syllosism) (1) ଏହି ଅନୁମାନ ତିନୋଟି ଅବୟବର ସମଷ୍ଟି ଯଥା :— ଦୁଇଟି ଅଗ୍ରସ୍ଥ ବାକ୍ୟ, ଏବଂ ଏକ ସିଦ୍ଧାନ୍ତ । ସିଦ୍ଧାନ୍ତ ବାକ୍ୟଟି ଦୁଇଟି ଅଗ୍ରସ୍ଥ ବାକ୍ୟ ଉପରେ ନିର୍ଭର କରି ସ୍ଥାପିତ ହୁଏ ।

ଏହି ନିଦେଶୀ ଅନୁମାନର ପ୍ରଚଳିତ ଦୃଷ୍ଟାନ୍ତ :—

ସକଳ ମନୁଷ୍ୟ ମରଣଶୀଳ }<br>
ରାମ ଗୋଟିଏ ମନୁଷ୍ୟ } ଅଗ୍ରସ୍ଥ ବାକ୍ୟ

ରାମ ମରଣଶୀଳ ଅଟେ, (ସିଦ୍ଧାନ୍ତ)

'ସିଦ୍ଧାନ୍ତ'ର ଉଦ୍ଦେଶ୍ୟପଦକୁ ପକ୍ଷପଦ, ବିଧେୟପଦକୁ ସାଧ୍ୟପଦ ଏବଂ ଯେଉଁ ପଦଟି ପକ୍ଷପଦ ଓ ସାଧ୍ୟପଦ ମଧ୍ୟରେ ସମ୍ପର୍କ ସ୍ଥାପନ କରିଥାଏ ତାହାକୁ ହେତୁପଦ କୁହାଯାଏ । ଉପରୋକ୍ତ ଉଦାହରଣରେ 'ରାମ' ପକ୍ଷପଦ 'ମରଣଶୀଳ' ସାଧ୍ୟପଦ ଏବଂ 'ମନୁଷ୍ୟ' ହେତୁପଦ ଅଟେ ।

---

(1) Syllosism is a discourse in which certain things being stated, something other than what is stated follows of necessity from their being so.

—*Aristotle Prior, Analytic*

ଯେଉଁ ଆଶ୍ରୟ ବାକ୍ୟ 'ସାଧ୍ୟପଦ' ଓ 'ହେତୁପଦ' ମଧ୍ୟରେ ସମ୍ପର୍କ ପ୍ରକାଶ କରେ ତାହାକୁ ପ୍ରଧାନ ଆଶ୍ରୟବାକ୍ୟ ଏବଂ ଯେଉଁ ଆଶ୍ରୟ ବାକ୍ୟ ପକ୍ଷପଦ ଓ ହେତୁପଦ ମଧ୍ୟରେ ସମ୍ପର୍କ ଦେଖାଏ ତାହାକୁ ଅପ୍ରଧାନ ଆଶ୍ରୟ ବାକ୍ୟ କୁହାଯାଏ । ଉପରୋକ୍ତ ଦୃଷ୍ଟାନ୍ତରେ 'ସକଳ ମନୁଷ୍ୟ ମରଣଶୀଳ' ପ୍ରଧାନ ଆଶ୍ରୟ ବାକ୍ୟ ଏବଂ 'ରାମ ଜଣେ ମନୁଷ୍ୟ' ଅପ୍ରଧାନ ଆଶ୍ରୟ ବାକ୍ୟ ଅଟେ । ଏହି ପ୍ରଧାନ ଆଶ୍ରୟ ବାକ୍ୟରେ 'ମନୁଷ୍ୟ' ଏହି ହେତୁପଦ ସଙ୍ଗେ ମରଣଶୀଳ' ସାଧ୍ୟପଦର ସମ୍ପର୍କ ପ୍ରକାଶ କରାଯାଇଛି ଏବଂ ଅପ୍ରଧାନ ଆଶ୍ରୟ ବାକ୍ୟରେ 'ମନୁଷ୍ୟ' ଏହି ହେତୁପଦ ସଙ୍ଗେ ରାମ ଏହି ପକ୍ଷପଦର ସମ୍ପର୍କ ପ୍ରକାଶ କରାଯାଇଛି ।

ସାଧାରଣତଃ ପ୍ରମାଣୋଦ୍ଧୃତ ନିଗମ ଅନୁମାନରେ ପକ୍ଷପଦ, ହେତୁପଦ ଏବଂ ସାଧ୍ୟପଦ ଯଥାକ୍ରମେ 'S', 'M', 'P' ଏହି ତିନୋଟି ପ୍ରତୀକ ଚିହ୍ନ ସାହାଯ୍ୟରେ ପ୍ରକାଶ କରାଯାଇଥାଏ ।

ଆରିଷ୍ଟଟଲ ଏହି ନିଗମ ଅନୁମାନକୁ ମଧ୍ୟମପଦ ବା 'ହେତୁପଦ'ର ଅବସ୍ଥାନ ଅନୁସାରେ ତିନୋଟି ଭିନ୍ନ ମୂର୍ତ୍ତି ସମ୍ପର୍କରେ ଆଲୋଚନା କରିଛନ୍ତି ।

'ହେତୁପଦ' ପ୍ରଧାନ ଆଶ୍ରୟ ବାକ୍ୟରେ 'ଉଦ୍ଦେଶ୍ୟ' ଏବଂ ଅପ୍ରଧାନ ଆଶ୍ରୟ ବାକ୍ୟରେ 'ବିଧେୟ' ହେଲେ ନିଗମନ ଅନୁମାନଟି ପ୍ରଥମ ମୂର୍ତ୍ତି ପର୍ଯ୍ୟାୟରେ ପଡ଼ିଥାଏ ।

ପ୍ରଥମ ମୂର୍ତ୍ତି ଅନୁମାନର ଦୃଷ୍ଟାନ୍ତ :—

M ଅଟେ P
S ଅଟେ M
ଅତଏବ S ଅଟେ P

ଦୁଇଟି ଆଶ୍ରୟ ବାକ୍ୟରେ ଯଦି ହେତୁପଦ ବିଧେୟ ସ୍ଥାନରେ ଥାଏ ତାହେଲେ ଅନୁମାନଟି ଦ୍ୱିତୀୟ ମୂର୍ତ୍ତିର ଅନ୍ତର୍ଗତ ।

ଦ୍ୱିତୀୟ ମୂର୍ତ୍ତି ଅନୁମାନର ଦୃଷ୍ଟାନ୍ତ :—

P ଅଟେ M
S ଅଟେ Not-M
ଅତଏବ S ଅଟେ Not-P

'ହେତୁପଦ' ଦୁଇଟି ଆଶ୍ରୟ ବାକ୍ୟରେ 'ଉଦ୍ଦେଶ୍ୟ' ହେଲେ ଅନୁମାନଟି ତୃତୀୟ ମୂର୍ତ୍ତିର ଅନ୍ତର୍ଗତ ।

ତୃତୀୟ ମୂର୍ତ୍ତି ଅନୁମାନର ଦୃଷ୍ଟାନ୍ତ :—

M ଅଟେ P
M ଅଟେ S
ଅତଏବ S ଅଟେ P

ଆରିଷ୍ଟଟଲ ଉପରୋକ୍ତ ତିନିପ୍ରକାର ଅନୁମାନର ତିନୋଟି ମୂର୍ତ୍ତି ମଧ୍ୟରୁ ପ୍ରଥମ ମୂର୍ତ୍ତିଟିକୁ ବିଶୁଦ୍ଧ ମୂର୍ତ୍ତି ବୋଲି କହିଛନ୍ତି । ଅନ୍ୟ ମୂର୍ତ୍ତିଗୁଡ଼ିକର ବିଶୁଦ୍ଧତା ଏହି ପ୍ରଥମ ମୂର୍ତ୍ତିରେ ରୂପାନ୍ତରିତ କରି ନିର୍ଣ୍ଣୟ କରାଯାଇପାରେ । ପ୍ରକୃତରେ ତିନିପ୍ରକାର ଅନୁମାନର ମୂଳ ସୂତ୍ର ଆରିଷ୍ଟଟଲ କେବଳ ଏହି ପ୍ରଥମ ମୂର୍ତ୍ତି ପର୍ଯ୍ୟାୟରେ ପଡୁଥିବା ଅନୁମାନ ଗୁଡ଼ିକରେ ପ୍ରୟୋଗ କରିଛନ୍ତି । ଏହି ତିନିପ୍ରକାର ଅନୁମାନର ମୂଳ ସୂତ୍ର ହେଲା ଏହି "ଯେ କୌଣସି ଜାତି ସମ୍ବନ୍ଧରେ ଯାହା ସ୍ୱୀକୃତ ବା ଅସ୍ୱୀକୃତ ତା ସେହି ଜାତି ଅନ୍ତର୍ଗତ ପ୍ରତ୍ୟେକ ବ୍ୟକ୍ତି ସମ୍ବନ୍ଧରେ ସ୍ୱୀକୃତ ବା ଅସ୍ୱୀକୃତ ।" ଏହି ସୂତ୍ରଟି ନିମ୍ନଲିଖିତ ଦୁଇଟି ଦୃଷ୍ଟାନ୍ତରେ ପ୍ରକାଶ କରାଯାଇପାରେ ।

| | |
|---|---|
| M ଅଟେ P | M ନୁହେଁ P |
| S ଅଟେ M | S ନୁହେଁ M |
| ଅତଏବ S ଅଟେ P | ଅତଏବ S ନୁହେଁ P |

ଏହି ଦୁଇଟି ଦୃଷ୍ଟାନ୍ତ ହିଁ ପ୍ରଥମ ମୂର୍ତ୍ତି ପର୍ଯ୍ୟାୟଭୁକ୍ତ । କାରଣ ଉଭୟ କ୍ଷେତ୍ରରେ ହେତୁପଦ ପ୍ରଧାନ ଆଶ୍ରୟ ବାକ୍ୟରେ ଉଦ୍ଦେଶ୍ୟ ଓ ଅପ୍ରଧାନ ଆଶ୍ରୟ ବାକ୍ୟରେ ବିଧେୟ ସ୍ଥାନ ନିଅଛି ।

ଆରିଷ୍ଟଟଲଙ୍କ ଡେମୋନେଷ୍ଟ୍ରେଟିକ ଅନୁମାନ, ଡାଇଲେକଟିକାଲ ଅନୁମାନ ଏବଂ କନଟେନସିଅସ ଅନୁମାନ ମଧ୍ୟରେ ପାର୍ଥକ୍ୟ ଦେଖାଇଛନ୍ତି । ଯେଉଁ ଅନୁମାନରେ ଆଶ୍ରୟ ବାକ୍ୟ ସତ୍ୟ ଏବଂ ପ୍ରାଥମିକ ସେ ଅନୁମାନଟି ଡେମନଷ୍ଟ୍ରେଟିଭ ଅନୁମାନ ଅଟେ । ଯେଉଁ ଅନୁମାନରେ ଆଶ୍ରୟ ବାକ୍ୟ ସାଧାରଣ ଏବଂ ସମସ୍ତଙ୍କ ବା ଅଧିକାଂଶଙ୍କ ଦ୍ୱାରା ସ୍ୱୀକୃତ ସେହି ଅନୁମାନଟି ଡାଇଲେକଟିକାଲ ଅନୁମାନ ଅଟେ । ପୁନଶ୍ଚ ଯେଉଁ ଅନୁମାନରେ ଆଶ୍ରୟ ବାକ୍ୟ ସାଧାରଣରେ ସ୍ୱୀକୃତ ବୋଲି ମନେ କରାଗଲେ ହେଁ ବସ୍ତୁତଃ ତାହା ନୁହେଁ ସେହିପରି ଅନୁମାନ କନଟେନସିଅସ ଅନୁମାନ ଅଟେ । ଆରିଷ୍ଟଟଲ ଏହି ତିନୋଟି ଅନୁମାନର ହେତ୍ୱାଭାସ ନେଇ ମଧ୍ୟ ବିସ୍ତାରିତ ଆଲୋଚନା କରିଛନ୍ତି ।

ଆରିଷ୍ଟଟଲ ସ୍ପଷ୍ଟ ଭାବେ ବୁଝିଥିଲେ ଯେ 'ଅନୁମାନ'ର ଆଶ୍ରୟ ବାକ୍ୟର ପ୍ରମାଣ ମଧ୍ୟ ପ୍ରୟୋଜନ । କିନ୍ତୁ ସବୁ ସତ୍ୟର ପ୍ରମାଣ ଖୋଜିଲେ ଅନାବସ୍ଥା ପ୍ରକ୍ରିୟା

ଦେଖାଦେବ ଏବଂ କିଛୁ ପ୍ରମାଣ କରି ହେବ ନାହିଁ । ସେଥିଯୋଗୁ ସେ କେତେଗୁଡ଼ିଏ ମୂଳନୀତି ଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରେ "ବୈପରୀତ୍ୟ ନୀତି" ହିଁ ପ୍ରଧାନ । ଏହି ନୀତି ମୂଳ ନିୟାମକ ହୋଇଥିବାରୁ ଏହା ପ୍ରମାଣ ସାପେକ୍ଷ ନୁହେଁ । ଏହି ବୈପରୀତ୍ୟ ନୀତିର ତାତ୍ପର୍ଯ୍ୟ ଏହି ଯେ ଏକ ବସ୍ତୁ ଏକ ସମୟରେ ଏକ ଭାବରେ ଗୋଟିଏ ଦ୍ରବ୍ୟର 'ଗୁଣ' ଏବଂ 'ଅଗୁଣ' ହୋଇପାରେ ନାହିଁ । ସବୁ ନ୍ୟାୟଧାରା ମୂଳରେ ଏହି ନୀତି ବିଦ୍ୟମାନ । ତେଣୁ ଏହି ନୀତିକୁ ସମସ୍ତ ନ୍ୟାୟଧାରାର ପୂର୍ବ ସ୍ୱୀକୃତ ନୀତି କୁହାଯାଏ । ଆରିଷ୍ଟଟଲ୍ କେବଳ ଅବରୋହାନୁମାନ ସମ୍ବନ୍ଧରେ ମଧ୍ୟ ଆଲୋଚନା କରିଛନ୍ତି । ତାଙ୍କ ମତରେ ବୈଜ୍ଞାନିକ ଆରୋହାନୁମାନ ହିଁ ପୂର୍ଣ୍ଣଗଣନା ମୂଳକ ଆରୋହାନୁମାନ କୁହାଏ । ଏହି ପ୍ରକାରର ପୂର୍ଣ୍ଣଗଣନା ମୂଳକ ଆରୋହାନୁମାନ ସମସ୍ତ ଦୃଷ୍ଟାନ୍ତର ଗଣନା ଭିତ୍ତିରେ ପ୍ରତିଷ୍ଠିତ । ସୁତରାଂ ଅପୂର୍ଣ୍ଣ ଗଣନାମୂଳକ ଆରୋହାନୁମାନକୁ ଯଥାର୍ଥ ଅନୁମାନ ବା ପ୍ରମାଣ ବୋଲି କୁହାଯାଇ ପାରିବ ନାହିଁ । ଆରିଷ୍ଟଟଲ ନିଗମୀ ଅନୁମାନରୂପ 'ଅବରୋହାନୁମାନ' ସମ୍ବନ୍ଧରେ ଯେତେ ଆଲୋଚନା କରିଛନ୍ତି, ଆରୋହାନୁମାନ ସମ୍ବନ୍ଧରେ ସେତେ ଆଲୋଚନା କରିନାହାନ୍ତି । ଏହାର କାରଣ ସମ୍ବନ୍ଧରେ ଏତିକି କୁହାଯାଇ ପାରେ ଯେ ଆରିଷ୍ଟଟଲଙ୍କ ସମୟରେ ଗଣିତ ଶାସ୍ତ୍ରର ଯେତେ ଉନ୍ନତି ହୋଇଥିଲା । ପ୍ରାକୃତିକ ବିଜ୍ଞାନର ସେତେ ଆଲୋଚନା ହୋଇ ନ ଥିଲା, ହୁଏତ ସେଥିଯୋଗୁ ସେ ଗଣିତର ଆଶ୍ରୟ ନେଇ ଗାଣିତିକ ଅନୁମାନ ବା ଅବରୋହାନୁମାନର ପ୍ରାଧାନ୍ୟ ସ୍ୱୀକାର କରିଛନ୍ତି ।

କେତେକ ସମାଲୋଚକ କୁହନ୍ତି ଯେ ଆରିଷ୍ଟଟଲ ମନୁଷ୍ୟ ନ୍ୟାୟଧାରାର ଆକାର ପ୍ରକାରଗତ ସମସ୍ୟାଗୁଡ଼ିକର ଆଲୋଚନା କରି ନାହାନ୍ତି । କିନ୍ତୁ ଏହା ସମାଲୋଚକଙ୍କ ସମାଲୋଚନା ହେଲେ ହେଁ ଆରିଷ୍ଟଟଲ ଯେ ସର୍ବପ୍ରଥମ ପ୍ରମାଣଶାସ୍ତ୍ରକୁ ଏକ ସ୍ୱତନ୍ତ୍ର ଶାସ୍ତ୍ରର ମର୍ଯ୍ୟାଦା ଦେଇ ଆକାରଗତ ପ୍ରମାଣଶାସ୍ତ୍ରର ଭିତ୍ତି ସ୍ଥାପନ କରିଛନ୍ତି ଏଥିରେ ତିଳେମାତ୍ର ସନ୍ଦେହର ଅବକାଶ ନାହିଁ । ଆରିଷ୍ଟଟଲ ଅନୁମାନ ସମ୍ପର୍କରେ ପ୍ରତୀକ ଚିହ୍ନ ବ୍ୟବହାର କରି ଆଧୁନିକ ସାଙ୍କେତିକ ପ୍ରମାଣଶାସ୍ତ୍ରର ଭିତ୍ତି ସ୍ଥାପନ ମଧ୍ୟ କରିଛନ୍ତି ।

ଦି ପ୍ରାୟର ଆନାଲିଟିକ୍ସରେ ଆରିଷ୍ଟଟଲ ନିଗମୀ ଅନୁମାନ ସମ୍ବନ୍ଧରେ ଆଲୋଚନା କରିଛନ୍ତି । ଦି 'ପୋଷ୍ଟେରିଅର ଆନାଲିଟିକସ' 'ଦି ଟପିକସ' ଏବଂ 'ଦି କ୍ୟାଟିଗୋରିସ' ପ୍ରଭୃତି ପୁସ୍ତକରେ ଆରିଷ୍ଟଟଲ ବଚନର, ଉଦ୍ଦେଶ୍ୟ ସହିତ ବିଧେୟର ବିଭିନ୍ନ ସମ୍ବନ୍ଧ ବା ବିଧେୟତା ଏବଂ କେଉଁ କେଉଁ ପଦ ବିଧେୟ ରୂପେ ବ୍ୟବହୃତ ହୋଇପାରେ ସେ ବିଷୟରେ ବିସ୍ତାରିତ ଆଲୋଚନା କରିଛନ୍ତି । ତାଙ୍କ ମତରେ

ବିଧେୟତା ଏବଂ ବିଧେୟକ ସମାନ ହୋଇ ନ ଥିବାରୁ ଆମେ ଯେତେବେଳେ କୌଣସି ବିଷୟ ସମ୍ବନ୍ଧରେ ଚିନ୍ତା କରୁ ସେତେବେଳେ କୌଣସି ନା କୌଣସି ବିଧେୟକୁ ଏହି ଚିନ୍ତା ସମ୍ବନ୍ଧରେ ଗ୍ରହଣ କରିଥାଉ । ବିଧେୟକ ସାଧାରଣତଃ ଦଶ ପ୍ରକାର । ସତ୍ତା, ପରିମାଣ, ଗୁଣ, ସମ୍ବନ୍ଧ, ଦେଶ, କାଳ, ଅବସ୍ଥାନ, ଅବସ୍ଥା, କର୍ତୃତ୍ୱ ଓ ପ୍ରତିକର୍ତୃତ୍ୱ ।

ଏହାଙ୍କ ମତରେ 'ବିଧେୟକ' କେବଳ 'ପ୍ରତ୍ୟୟ' ନୁହେଁ । ଏହା ବହିର୍ବିଶ୍ୱର ଅସ୍ତିତ୍ୱର ଯଥାର୍ଥ ସୂଚକ ମଧ୍ୟ । ଅର୍ଥାତ୍ ବିଧେୟକ କେବଳ ଚିନ୍ତା ସମ୍ବନ୍ଧୀୟ ନ ହୋଇ, ଚିନ୍ତା ବିଷୟକ କ୍ଷେତ୍ର ସମ୍ବନ୍ଧୀୟ ମଧ୍ୟ ହୋଇଥାଏ । ସେହି ହେତୁ ବିଧେୟକର ଯେପରି ପ୍ରମାଣଶାସ୍ତ୍ରଗତ ଏକ ଦିଗ ଅଛି ସେହିପରି ଏକ ଅଧିବିଦ୍ୟାକ୍ ଦିଗ ମଧ୍ୟ ଅଛି । ଅଧିବିଦ୍ୟାକ୍ ଦିଗରୁ ଦେଖିଲେ ବିଧେୟକର ପ୍ରକୃତ ସତ୍ତାଜଗତର ବୋଧଗମ୍ୟ ହୋଇଥାଏ । ଯେ କୌଣସି ବିଷୟରେ ପ୍ରଥମ କଥା ତାର ଅସ୍ତିତ୍ୱ ବା ସତ୍ତା । ଉଦାହରଣ ସ୍ୱରୂପ :—ଗୋଟିଏ 'ହଂସ'ର କଥା ଧରାଯାଉ । ହଂସ ସମ୍ବନ୍ଧରେ ପ୍ରଥମ କଥା ଏହି ଯେ ହଂସର ଅସ୍ତିତ୍ୱ ଅଛି । ସେହି ଅସ୍ତିତ୍ୱ ପୁନଶ୍ଚ କେଉଁ ବର୍ଣ୍ଣ ବା ଗୁଣ ଛଡ଼ା ରହିପାରିବ ନାହିଁ । ହଂସର 'ଶ୍ୱେତ' ଗୁଣ ପୁଣି ତାର ପରିମାଣ ଛଡ଼ା ରହିବା ଅସମ୍ଭବ । ପୁନଶ୍ଚ ଏକ ହଂସ ଅନ୍ୟ ହଂସ ବା ଅନ୍ୟ ପ୍ରାଣୀ ଠାରୁ ଶ୍ରେଷ୍ଠ ବା ବଡ଼ ଏହି ସମ୍ବନ୍ଧ ପ୍ରକାଶ କରିଥାଏ, ପୁନଶ୍ଚ ଏକ 'ହଂସ' କେଉଁ ଦେଶରେ କେଉଁ କାଳରେ ଏବଂ କେଉଁ କେଉଁ ଅବସ୍ଥାରେ ଅବସ୍ଥାନ କରେ, ସର୍ବଶେଷରେ ହଂସ ଯେପରି ଅନ୍ୟ ବସ୍ତୁ ଉପରେ ନିର୍ଭର କରେ ସେହିପରି ହଂସ ଉପରେ ଅନ୍ୟ ବସ୍ତୁର ମଧ୍ୟ କିଛି ପ୍ରତିକର୍ତୃତ୍ୱ ପ୍ରକାଶ ପାଇଥାଏ ।

ଆରିଷ୍ଟଟଲଙ୍କ ମତରେ ଉଦ୍ଦେଶ୍ୟ ସହିତ ବିଧେୟର ସମ୍ବନ୍ଧ ବା ବିଧେୟତା ମୁଖ୍ୟତଃ ପାଞ୍ଚ ପ୍ରକାରର—ଲକ୍ଷଣ, ପରିଜାତି ଧର୍ମ ବା ପରିଜାତି, ବିଶେଷ ଧର୍ମ, ଅନୁଲକ୍ଷଣ ଓ ଉପଜାତି ଧର୍ମ । ଯଦି କୌଣସି ବଚନରେ ବିଧେୟ ପଦ ସହିତ ଉଦ୍ଦେଶ୍ୟ ପଦର ସମ୍ବନ୍ଧ ଏହି ପ୍ରକାରର ହେବ ଯେଉଁଠାରେ କି ବିଧେୟକୁ ଉଦ୍ଦେଶ୍ୟ ସ୍ଥାନରେ ଏବଂ ଉଦ୍ଦେଶ୍ୟକୁ ବିଧେୟ ସ୍ଥାନରେ ପ୍ରୟୋଗ କରି ମଧ୍ୟ ବଚନର କୌଣସି ଅର୍ଥଗତ ପ୍ରଭେଦ ହେବ ନାହିଁ । ତାହେଲେ ଏହି ପ୍ରକାରର ବିଧେୟପଦ ସହିତ ଉଦ୍ଦେଶ୍ୟପଦ ସମ୍ବନ୍ଧକୁ 'ଲକ୍ଷଣ' କୁହାଯାଏ । ଉଦାହରଣ ସ୍ୱରୂପ—'ମନୁଷ୍ୟ ବିଚାରଶୀଳ ପ୍ରାଣୀ' । ଏହି ବାକ୍ୟରେ 'ମନୁଷ୍ୟ' ଉଦ୍ଦେଶ୍ୟପଦ ଓ 'ବିଚାରଶୀଳ ପ୍ରାଣୀ' । ବିଧେୟ ପଦବାଚ୍ୟ ଅଟେ । ଏହି କ୍ଷେତ୍ରରେ 'ମନୁଷ୍ୟ ବିଚାରଶୀଳ ପ୍ରାଣୀ' ବିଧେୟ ପଦବାଚ୍ୟ ଅଟେ । ଏହି କ୍ଷେତ୍ରରେ 'ମନୁଷ୍ୟ ବିଚାରଶୀଳ ପ୍ରାଣୀ' ନ କହି "ବିଚାରଶୀଳ ପ୍ରାଣୀ ମନୁଷ୍ୟ" କହିଲେ ବାକ୍ୟଟିର ଅର୍ଥଗତ ପ୍ରଭେଦ ହେଉନାହିଁ । ସୁତରାଂ ଏହି ପ୍ରକାରର ବିଧେୟକୁ ଉଦ୍ଦେଶ୍ୟ ପଦର ଲକ୍ଷଣ କୁହାଯାଏ ।

ପୁନଶ୍ଚ ଅର୍ଥ ବ୍ୟତିକ୍ରମ ନ କରି ଉଦ୍ଦେଶ୍ୟ ଓ ବିଧେୟ ପଦର ସ୍ଥାନ ପରିବର୍ତ୍ତନ କରି ନ ହେଲେ ସେ ସ୍ଥାନରେ ବିଧେୟ ପଦଟି ଉଦ୍ଦେଶ୍ୟ ସମ୍ବନ୍ଧରେ ହୁଏତ ପରିଜାତି ଧର୍ମ ବା ବିଶେଷ ଧର୍ମ ବା ଅନୁଲକ୍ଷଣ ବା ଉପାହିତ ଧର୍ମ ହୋଇଥାଏ ।

'ମନୁଷ୍ୟ ପ୍ରାଣୀ ବିଶେଷ' — ଏହି ବଚନ ସମ୍ବନ୍ଧରେ ବିଧେୟଟି ଉଦ୍ଦେଶ୍ୟ ତୁଳନାରେ ଏକ ବୃହତ୍ତର ଜାତିବୋଧକ । ସୁତରାଂ ଉଦ୍ଦେଶ୍ୟ ପଦର ସମ୍ବନ୍ଧରେ ବିଧେୟଟି ଏକ 'ପରିଜାତି' । ପୁନଶ୍ଚ 'ମନୁଷ୍ୟ ବିଚାରଶୀଳ' — ଏହି ବଚନରେ 'ବିଚାରଶୀଳ' ଏହି ବିଧେୟ ପଦଟି ଉଦ୍ଦେଶ୍ୟ ପଦର ଏପରି ଏକ ସ୍ୱଭାବ ଧର୍ମ ପ୍ରକାଶ କରୁଅଛି ଯାହା ଉଦ୍ଦେଶ୍ୟ ପଦର ବିଶିଷ୍ଟ ସ୍ୱଭାବ ଏବଂ ଏହି ସ୍ୱଭାବର ଭିତ୍ତିରେ ହିଁ ପରିଜାତି ଅନ୍ତର୍ଗତ ଅନ୍ୟାନ୍ୟ ଜାତିଠାରୁ ଉଦ୍ଦେଶ୍ୟପଦ ସୂଚିତ ଜାତିକୁ ପୃଥକ କରଯାଇଛି । ବିଚାରଶୀଳତା ଯୋଗୁହିଁ ମନୁଷ୍ୟ ଜାତି ମନୁଷ୍ୟେତର ଅନ୍ୟାନ୍ୟ ପ୍ରାଣୀଠାରୁ ଭିନ୍ନ । ଏହି ପ୍ରକାରର ସ୍ୱଭାବ ଧର୍ମ କୁହାଯାଏ । ପରିଜାତି ଏବଂ ବିଶିଷ୍ଟ ଧର୍ମ ଉଭୟେ 'ଲକ୍ଷଣ'ର ଅନ୍ତର୍ଗତ ।

ଆରିଷ୍ଟଟଲଙ୍କ ମତରେ ଯେଉଁ ଗୁଣଟି ଉଦ୍ଦେଶ୍ୟପଦ ସୂଚିତ ଜାତି ଅଧୀନ ସବୁ ବସ୍ତୁ ବା ବ୍ୟକ୍ତି ମଧ୍ୟରେ ଅଛି ଅଥଚ ଯାହା ସେମାନଙ୍କର ଲକ୍ଷଣର ଅନ୍ତର୍ଗତ ନୁହେଁ ତାହାକୁ ଅନୁଲକ୍ଷଣ କୁହାଯାଏ । ଯେପରି —"ମନୁଷ୍ୟ ସୁଖ ଦୁଃଖ ବୋଧର ଅଧୀନ" । ଏହି ବଚନରେ ବିଧେୟପଦ "ସୁଖ ଦୁଃଖ ବୋଧର ଅଧୀନ" ଉଦ୍ଦେଶ୍ୟ ପଦ 'ମନୁଷ୍ୟ'ର ଏପରି ଏକ ଗୁଣ ପ୍ରକାଶ କରୁଛି ଯାହା ମନୁଷ୍ୟ ଜାତି ଅନ୍ତର୍ଗତ ସବୁ ବ୍ୟକ୍ତିଙ୍କଠାରେ ପ୍ରକାଶ ପାଏ ଅଥଚ ମନୁଷ୍ୟ 'ଲକ୍ଷଣ'ର ଅନ୍ତର୍ଗତ ନୁହେଁ । ଏହି ପ୍ରକାର ଗୁଣକୁ ହିଁ 'ଅନୁଲକ୍ଷଣ' କୁହାଯାଏ ।

ଯେତେବେଳେ କୌଣସି ବଚନର ବିଧେୟପଦ ଏପରି ଏକ ଗୁଣ ପ୍ରକାଶ କରେ ଯାହା ଉଦ୍ଦେଶ୍ୟପଦ ସୂଚିତ ଜାତିର ଅନ୍ତର୍ଗତ ସବୁ ବ୍ୟକ୍ତିଙ୍କଠାରେ ଥାଇପାରେ ପୁନଶ୍ଚ ନ ଥାଇପାରେ ମଧ୍ୟ ଏବଂ ଯେଉଁ ଗୁଣ ଜାତିର ସ୍ୱଭାବର ଅନ୍ତର୍ଗତ ନୁହେଁ ସେହି ଗୁଣକୁ 'ଉପାହିତ ଧର୍ମ' କୁହାଯାଏ । ଯେପରି 'ମନୁଷ୍ୟ ଆରାମ ପ୍ରିୟ' । ଏହି ବଚନରେ 'ଆରାମ ପ୍ରିୟ' ଏହି ବିଧେୟପଦ ମନୁଷ୍ୟ ଜାତି ଅନ୍ତର୍ଗତ ସବୁ ବ୍ୟକ୍ତିଙ୍କଠାରେ ଥାଇ-ପାରେ ନ ଥାଇପାରେ ମଧ୍ୟ । ଏହାହିଁ ଉପାହିତ ଧର୍ମ ।

ପରବର୍ତ୍ତୀ ସମୟରେ "ପରଫିରି" ନାମକ ଜଣେ ରୋମାନ୍ ଅଧ୍ୟାପକ ଆରିଷ୍ଟଟଲଙ୍କ ମତର ତ୍ରୁଟିପୂର୍ଣ୍ଣ ଏକ ବିବରଣୀ ପ୍ରକାଶ କରିଥିଲେ । ଏହି ବିବରଣୀରେ ସେ ପାଞ୍ଚ ପ୍ରକାରର ବିଧେୟତା ଆଲୋଚନା କରିଛନ୍ତି । ସେଥିରେ ସେ 'ଆରିଷ୍ଟଟଲ'ଙ୍କର 'ଲକ୍ଷଣ'

ନାମକ ବିଧେୟତାକୁ ବାଦ୍ ଦେଇ ସେ ସ୍ଥାନରେ ଉପକାନ୍ତ ନାମରେ ଏକ ପ୍ରକାର ବିଧେୟତାର ଉଲ୍ଲେଖ କରିଛନ୍ତି । ଉଦାହରଣ ସ୍ୱରୂପ 'ରାମ ଏକ ମନୁଷ୍ୟ' । ଏହି ବଚନରେ ମନୁଷ୍ୟପଦ 'ରାମ' ପଦର ଉପକାନ୍ତବାଚୀ ଅଟେ । ତେଣୁ ଏହା ଉପକାନ୍ତ ଅନ୍ତର୍ଗତ ବିଧେୟତା ହେବ । କିନ୍ତୁ ଏପରି କହିବା ଭ୍ରମାତ୍ମକ । କାରଣ ଜାତିବାଚୀ ପଦ ସମ୍ପର୍କରେ ହିଁ ଏକ ପଦକୁ ଉପକାନ୍ତବାଚୀ ବୋଲି କୁହାଯାଇପାରେ । ଯେପରି ପ୍ରାଣୀ ପଦର ମନୁଷ୍ୟ ପଦ ଉପକାନ୍ତ ପଦ ଅଟେ । କିନ୍ତୁ ବ୍ୟକ୍ତି ସମ୍ପର୍କରେ କୌଣସି ପଦକୁ ଉପକାନ୍ତ ବୋଲି କୁହାଯାଇପାରେ ନାହିଁ । କାରଣ ରାମ ନାମଟି ମନୁଷ୍ୟର ନ ହୋଇ ଯେ କୌଣସି ବସ୍ତୁର ହୋଇ ପାରିଥାଏ । ଅତଏବ 'ଉପକାନ୍ତ' ଏକ ବିଧେୟତା ନୁହେଁ ।



# ଚତୁର୍ଥ ଅଧ୍ୟାୟ

## ଆରିଷ୍ଟଟଲଙ୍କ ଅଧିବିଦ୍ୟା

ଜିଜ୍ଞାସା ମନୁଷ୍ୟର ସ୍ୱାଭାବିକ ଧର୍ମ । ପ୍ରାଚୀନ ଦାର୍ଶନିକଗଣ ଯଥା :—ସକ୍ରେଟିସ୍, ପ୍ଲେଟୋ ଓ ଆରିଷ୍ଟଟଲଙ୍କ ମତରେ ଏହି ଜିଜ୍ଞାସା ଦ୍ୱାରା ମନୁଷ୍ୟ ଚରନ୍ତନ ସତ୍ୟର ମୂଳ ଭିତ୍ତି ଉପଲବ୍ଧି କରି ପ୍ରକୃତ ଜ୍ଞାନୀ ରୂପେ ବିବେଚିତ ହୋଇଥାଏ । ଏହି ଦାର୍ଶନିକଗଣ 'ଜ୍ଞାନ'କୁ ହିଁ ଗୁରୁତ୍ୱ ଦେଇଛନ୍ତି । ସକ୍ରେଟିସ୍‌ଙ୍କ ମତରେ 'knowledge is virtue' ଏହାଙ୍କ ମତରେ ଜ୍ଞାନର ଯଥାର୍ଥ ରୂପହିଁ ନୈତିକ ଜ୍ଞାନ । କିନ୍ତୁ ପ୍ଲେଟୋ ଓ ଆରିଷ୍ଟଟଲ ସକଳ ପ୍ରକାରର ତାତ୍ତ୍ୱିକ ଜ୍ଞାନକୁ ପ୍ରକୃତ 'ଜ୍ଞାନ' ଆଖ୍ୟା ଦେଇଛନ୍ତି ।

ପ୍ରତ୍ୟେକ ମନୁଷ୍ୟ ସ୍ୱଭାବତଃ ଜ୍ଞାନ ପିପାସୁ । କୌତୁହଳ ନିବୃତ୍ତି ବ୍ୟତୀତ ଅନ୍ୟ କୌଣସି ଉଦ୍ଦେଶ୍ୟ ଏହି ଜିଜ୍ଞାସା ମୂଳରେ ନାହିଁ । ଆରିଷ୍ଟଟଲଙ୍କ ମତରେ ଅଧିବିଦ୍ୟା ଦ୍ୱାରାହିଁ ଆମ୍ଭେମାନେ ଚରମ ତତ୍ତ୍ୱର ମୂଳନୀତି ବା 'ସତ୍ତା'ର ପ୍ରକୃତି ଜାଣିବାକୁ ଚେଷ୍ଟା କରୁ । ଏହାଙ୍କ ମତରେ ଅଧିବିଦ୍ୟା ହିଁ ଶ୍ରେଷ୍ଠ ପ୍ରଜ୍ଞା । ଏହି ପ୍ରଜ୍ଞା ବା ଅଧିବିଦ୍ୟା ପ୍ରତ୍ୟକ୍ଷ ନିର୍ଭର ନୁହେଁ । ଏହା ଇନ୍ଦ୍ରିୟାତୀତ ଅର୍ଥାତ୍ ଚରମତତ୍ତ୍ୱର ମୂଳନୀତି ବା ସତ୍ତାର ପ୍ରକୃତି ଆଲୋଚନା ପ୍ରତ୍ୟକ୍ଷ ଜ୍ଞାନ ଦ୍ୱାରା ସମ୍ଭବ ନୁହେଁ । ଏହା ବୁଦ୍ଧିଗ୍ରାହ୍ୟ । ସାଂସାରିକ ମୂଲ୍ୟାଙ୍କନ ଭିତ୍ତିରେ 'ଜ୍ଞାନ'ର ମୂଲ୍ୟାଙ୍କନ ସମ୍ଭବ ନୁହେଁ । ଏହାର ମୂଲ୍ୟ ଅନ୍ତର୍ନିହିତ । ସୁତରାଂ ଏହା ବ୍ୟବହାରିକ ଉପଯୋଗିତା ଉପରେ ନିର୍ଭରଶୀଳ ନୁହେଁ ।

ଏହି ଚରମ ତତ୍ତ୍ୱର ମୂଳନୀତି ଆଲୋଚନା କରିବାକୁ ହେଲେ ଆରିଷ୍ଟଟଲଙ୍କ ମତାନୁସାରେ ପ୍ରଥମେ ତାର କାରଣ ଓ ଏହାର ପ୍ରକୃତି ସମ୍ବନ୍ଧରେ ବିଶେଷ ଧାରଣା ପ୍ରୟୋଜନ । ଏହି ମୂଳନୀତିକୁ ଆରିଷ୍ଟଟଲ ମୁଖ୍ୟତ ଚାରିଭାଗରେ ବିଭକ୍ତ କରିଛନ୍ତି । (୧) ଉପାଦାନ କାରଣ, (୨) ଆକାରଗତ କାରଣ, (୩) ନିମିତ୍ତ କାରଣ ଏବଂ (୪) ଉଦ୍ଦେଶ୍ୟ କାରଣ । ନିମ୍ନଲିଖିତ ଉଦାହରଣ ଦ୍ୱାରା ହିଁ ଏହି ଚତୁର୍ବିଧ କାରଣର ପ୍ରକୃତି ସମ୍ପୂର୍ଣ୍ଣ ବୋଧଗମ୍ୟ ହେବ ।

କୌଣସି ଶିଳ୍ପୀ ପଥରରେ ମୂର୍ତ୍ତିଟିଏ ଗଢ଼ିଲବେଳେ ପଥର ମୂର୍ତ୍ତିଟିର ଉପାଦାନ କାରଣ ହୋଇଥାଏ । ଯେଉଁ ଆକାରରେ ମୂର୍ତ୍ତିଟି ଗଢ଼ାଯାଇଥାଏ ତାହା ଆକାରଗତ କାରଣ, ଯନ୍ତ୍ରପାତି ସହିତ ପଥରର ସଂଯୋଗ ନିମିତ୍ତ କାରଣ ଏବଂ ଯେଉଁ ଉଦ୍ଦେଶ୍ୟରେ ଶିଳ୍ପୀ ମୂର୍ତ୍ତିଟି ଗଢ଼ିଛି ତାହା ଉଦ୍ଦେଶ୍ୟ କାରଣ ରୂପେ ବିବେଚିତ ହୋଇଥାଏ ।

ଆରିଷ୍ଟଟଲଙ୍କ ପୂର୍ବ ଗ୍ରୀକ୍ ଦାର୍ଶନିକଗଣ ଏହି ଉପୋରକ୍ତ ଚତୁର୍ବିଧ କାରଣ ସମ୍ପର୍କରେ କୌଣସି ସୁସ୍ପଷ୍ଟ ମନ୍ତବ୍ୟ ଦେଇ ନାହାନ୍ତି । ଦାର୍ଶନିକ ଥେଲସ ଆନାକ୍ସିମେନେସ୍, ହେରେକ୍ଲାଇଟସ୍ ପ୍ରଭୃତି ଦାର୍ଶନିକମାନେ କେବଳ ଉପାଦାନ କାରଣ ସମ୍ପର୍କରେ କହିଛନ୍ତି । ଦାର୍ଶନିକ ଆନାକ୍ସାଗୋରସ ବସ୍ତୁ ସୌନ୍ଦର୍ଯ୍ୟ ଓ ଗଠନ ପଦ୍ଧତି କେବଳ ମାତ୍ର ଜଡ଼ ଉପାଦାନ ମାଧ୍ୟମରେ ବ୍ୟାଖ୍ୟା କରିବା ଅସମ୍ଭବ ବା କଷ୍ଟସାଧ୍ୟ ଭାବି ମନର କ୍ରିୟାକୁ କାରଣ ବୋଲି ସ୍ୱୀକାର କରିଛନ୍ତି । ଆରିଷ୍ଟଟଲ ମନର କ୍ରିୟାକୁ ନିମିତ୍ତ କାରଣ ବୋଲି କହୁଥିବା ସ୍ଥଳେ ଦାର୍ଶନିକ ପ୍ଲେଟୋ ଉପାଦାନ କାରଣ ଓ ଆକାରଗତ କାରଣକୁ ହିଁ କେବଳ ପ୍ରାଧାନ୍ୟ ଦେଇଛନ୍ତି । ପ୍ଲେଟୋଙ୍କ ମତରେ ନିମିତ୍ତ କାରଣ କିମ୍ବା ଉଦ୍ଦେଶ୍ୟ କାରଣ, କାରଣ ନୁହେଁ ।

ଆରିଷ୍ଟଟଲ ତାଙ୍କର ମେଟାଫିଜିକ୍ସ ଗ୍ରନ୍ଥରେ ଅଧିବିଦ୍ୟାକ ସତ୍ତା ନେଇ ବିସ୍ତୃତ ଆଲୋଚନା କରିଛନ୍ତି । ତାଙ୍କ ମତରେ ଅଧିବିଦ୍ୟା ଦ୍ୱାରା ହିଁ ଆମ୍ଭେ ସତ୍ତାର ପ୍ରକୃତ ସ୍ୱରୂପରେ ଜାଣିପାରୁ । ଅଧିବିଦ୍ୟାର ବିଷୟବସ୍ତୁ ସାଧାରଣ ସତ୍ତା ଅଟେ । କୌଣସି ଦ୍ରବ୍ୟର ସ୍ଥିତି ହିଁ ଏହାର ଏକକତ୍ୱ ବା ଐକ୍ୟକୁ ବୁଝାଏ । ସୁତରାଂ ଐକ୍ୟ ସତ୍ତାର ଅପରିହାର୍ଯ୍ୟ ଗୁଣ । କିନ୍ତୁ ସତ୍ତାକୁ ପରିଜାତି ଆଖ୍ୟା ଦେବା ଅନୁଚିତ । ମନୁଷ୍ୟର ଲକ୍ଷଣ [ବିଚାରଶୀଳ ପ୍ରାଣୀ] କଥା ନିଆଯାଉ । ଏହି କ୍ଷେତ୍ରରେ ପ୍ରାଣୀ ପରିଜାତି ହେବା ସ୍ଥଳରେ ବିଚାରଶୀଳ ବଶିଷ୍ଟ ଧର୍ମ । କିନ୍ତୁ ବିଚାରଶୀଳତା ସମ୍ବନ୍ଧରେ ପ୍ରାଣୀତ୍ୱ ଅର୍ଥାତ୍ ବଶିଷ୍ଟ ଧର୍ମ ସମ୍ବନ୍ଧରେ ପରିଜାତି ବିଧେୟ ରୂପେ ପ୍ରୟୋଗ କରି ହେବ ନାହିଁ । କିନ୍ତୁ ବଶିଷ୍ଟ ଧର୍ମ ଏବଂ ପରିଜାତି ଉଭୟଙ୍କୁ ସତ୍ତାର ବିଧେୟ ରୂପେ ପ୍ରୟୋଗ କରି ହେବ । ଅତଏବ ସତ୍ତା ପରିଜାତି ନୁହେଁ ।

ପୁନଶ୍ଚ ସମସ୍ତ ବସ୍ତୁ ସମ୍ବନ୍ଧରେ ସତ୍ତା ପଦଟି ଏକ ଅର୍ଥରେ ପ୍ରଯୁଜ୍ୟ ନୁହେଁ । ଦ୍ରବ୍ୟର ସତ୍ତା ଏବଂ ଦ୍ରବ୍ୟ ମଧ୍ୟରେ ଥିବା ଗୁଣର ସତ୍ତା ଏକ ନୁହେଁ । ଆରିଷ୍ଟଟଲଙ୍କ ମତରେ ଦ୍ରବ୍ୟର ସତ୍ତା ହିଁ ମୂଳ ସତ୍ତା ଏବଂ ଅଧିବିଦ୍ୟା ଏହି ସତ୍ତା ସମ୍ବନ୍ଧରେ ଆଲୋଚିତ ବସ୍ତୁ । ଅନେକ କହିପାରନ୍ତି ସମସ୍ତ ବସ୍ତୁ ମାନେ ହିଁ ଦ୍ରବ୍ୟ ବା ଦ୍ରବ୍ୟର କୌଣସି ପ୍ରକାର ତା'ହେଲେ ଅଧିବିଦ୍ୟା କେଉଁ ସତ୍ତା ସମ୍ବନ୍ଧରେ ଆଲୋଚିତ ବସ୍ତୁ ହେବ ? ସମସ୍ତ ବସ୍ତୁ ଦ୍ରବ୍ୟ ହେଲେ ହେଁ ସତ୍ତାର ଯଥାର୍ଥ ପ୍ରକୃତି ଏହି ଯେ ସତ୍ତା ମୂଳ ସ୍ୱଭାବର ଏବଂ ନିତ୍ୟ ବସ୍ତୁ ମାଧ୍ୟମରେ ପ୍ରକାଶ ଲାଭ କରିଥାଏ । ଏହି ସତ୍ତା ଅନିତ୍ୟ ବା ପରିବର୍ତ୍ତନ ଶୀଳ ବସ୍ତୁରେ ନ ଥାଏ । ଅତଏବ ଯଦି କିଛି ନିତ୍ୟ ବସ୍ତୁ ଥାଏ ତାହାହେଲେ ତାହାହିଁ ଅଧିବିଦ୍ୟା ସମ୍ବନ୍ଧୀୟ ହେବ । ସମସ୍ତ ପରିବର୍ତ୍ତନ ନିୟାମକର ଏକ ନିତ୍ୟ ସତ୍ତା ଯେ ବିଦ୍ୟମାନ ତାହା ସ୍ୱୀକୃତ, ନଚେତ୍ କୌଣସି ଅନିତ୍ୟ ବସ୍ତୁର କାରଣ ସ୍ୱରୂପ କୌଣସି ଅନିତ୍ୟ ବସ୍ତୁକୁ ଗ୍ରହଣ କଲେ ଅନବସ୍ଥା ଦୋଷ ଦେଖା ଦେବ।

ସ୍ୱୀକାରକେ । ସୁତରାଂ ଏହି ନିତ୍ୟ ସତ୍ତା ବା ଦ୍ରବ୍ୟ ଆଧ୍ୟାତ୍ମିକ ପ୍ରକୃତିର ହେବା ସ୍ୱାଭାବିକ । ଏହି ଆଧ୍ୟାତ୍ମିକ ସତ୍ତା ହିଁ ଅଧିବିଦ୍ୟାର ମୁଖ୍ୟ ଆଲୋଚ୍ୟ ବିଷୟ ହୋଇଥିବାରୁ ଅଧିବିଦ୍ୟାକୁ ହିଁ ସଙ୍ଗତ ରୂପେ ଧର୍ମବିଦ୍ୟା କୁହାଯାଏ ।

ଗଣିତ ଶାସ୍ତ୍ର ଏକ ଉପପତ୍ତିକ ବିଜ୍ଞାନ ଏବଂ ଏହି ଶାସ୍ତ୍ରର ବିଷୟ ପରିବର୍ତ୍ତନଶୀଳ ଓ ଜଡ଼ବସ୍ତୁ ସମ୍ବନ୍ଧୀୟ ନ ହୋଇ ଜଡ଼ ବିଷୟଠାରୁ ସ୍ୱତନ୍ତ୍ର ହେଲେହେଁ ଗଣିତ ଶାସ୍ତ୍ରକୁ ଅଧିବିଦ୍ୟା ଆଖ୍ୟା ଦେଇ ହେବ ନାହିଁ । କାରଣ ଗଣିତ ଶାସ୍ତ୍ର ଜଡ଼ ବିଷୟ ସମ୍ବନ୍ଧୀୟ ଅଟେ । ଏହାକୁ ଜଡ଼ ଠାରୁ ସମ୍ପୂର୍ଣ୍ଣ ରୂପେ ସ୍ୱତନ୍ତ୍ର କରି ହେବ ନାହିଁ । ସେହିପରି ପଦାର୍ଥ ବିଦ୍ୟା ସମ୍ପୂର୍ଣ୍ଣ ରୂପେ ଜଡ଼ ଓ ବସ୍ତୁ ସମ୍ବନ୍ଧୀୟ ବିଷୟ ଅଟେ । ଏହି ବସ୍ତୁ ପରିବର୍ତ୍ତନଶୀଳ ହୋଇଥିବାରୁ ଏହା ମଧ୍ୟ ଅଧିବିଦ୍ୟା ସମ୍ବନ୍ଧୀୟ ନୁହେଁ ।

ଆରିଷ୍ଟଟଲ ଦ୍ରବ୍ୟକୁ ଦୁଇ ଭାଗରେ ଭାଗ କରିଛନ୍ତି । [୧] ନିତ୍ୟ, (୨) ପରିବର୍ତ୍ତନଶୀଳ । ପୁନଶ୍ଚ କେତେକ ଗ୍ରନ୍ଥରେ ସେ ଦ୍ରବ୍ୟକୁ ତିନି ଭାଗରେ ଭାଗ କରି ଉଲ୍ଲେଖ କରିଛନ୍ତି । [୧] ଇନ୍ଦ୍ରିୟଗ୍ରାହ୍ୟ ବିନାଶଶୀଳ, (୨) ଇନ୍ଦ୍ରିୟ ଗ୍ରାହ୍ୟ ନିତ୍ୟ, [୩] ଅତୀନ୍ଦ୍ରିୟ ନିତ୍ୟ । ଉଦ୍ଭିଦ ଓ ପ୍ରାଣୀ ଇନ୍ଦ୍ରିୟଗ୍ରାହ୍ୟ ଓ ବିନାଶଶୀଳ ଅଟେ । ଆକାଶର ଗ୍ରହ ନକ୍ଷତ୍ର ଇନ୍ଦ୍ରିୟଗ୍ରାହ୍ୟ ନିତ୍ୟ ଅଟେ । ମନୁଷ୍ୟର ବିଚାରଶୀଳ ଆତ୍ମା ଓ ଈଶ୍ୱର ତୃତୀୟ ଶ୍ରେଣୀ ଅନ୍ତର୍ଗତ, ଅର୍ଥାତ ଅତୀନ୍ଦ୍ରିୟ ଓ ନିତ୍ୟ ଅଟେ ।

ଅଧିବିଦ୍ୟା ଅତୀନ୍ଦ୍ରିୟ ଓ ନିତ୍ୟ ଦ୍ରବ୍ୟ ସମ୍ବନ୍ଧୀୟ । ବର୍ତ୍ତମାନ ପ୍ରଶ୍ନ କରାଯାଇପାରେ ଯେ ଏହି ଅତୀନ୍ଦ୍ରିୟ ଓ ନିତ୍ୟ ଦ୍ରବ୍ୟର ସ୍ୱରୂପ କ'ଣ ? ଏହି ପ୍ରସଙ୍ଗରେ ଆରିଷ୍ଟଟଲ ପ୍ଲେଟୋଙ୍କ ଜାତିବାଦ ତତ୍ତ୍ୱକୁ ଖଣ୍ଡନ କରି ନିଜ ମତ ପ୍ରକାଶ କରିଛନ୍ତି । ଏହିଠାରେ ପ୍ଲେଟୋଙ୍କ ଜାତିବାଦ ତତ୍ତ୍ୱ ସମ୍ବନ୍ଧରେ ସମ୍ୟକ୍ ଆଲୋଚନା ସଙ୍ଗତ ହେବ ।

ପ୍ଲେଟୋ ତାଙ୍କ ଅଧିବିଦ୍ୟା ଆଲୋଚନାରେ ଯଥାର୍ଥ ଜ୍ଞାନର ବୁଦ୍ଧି ଗ୍ରାହ୍ୟ ଏବଂ ନିତ୍ୟ ବିଷୟର ନାମ ଦେଇଛନ୍ତି ଜାତି ବା ଆକାର । କେତେବେଳେ ସେ ଜାତିକୁ ଧାରଣା ବୋଲି ମଧ୍ୟ କହିଛନ୍ତି । ଏହି ଜାତିକୁ ସେ ସାମାନ୍ୟ ଆଖ୍ୟା ମଧ୍ୟ ଦେଇଛନ୍ତି । ପ୍ଲେଟୋଙ୍କ ଜାତିବାଦ ପ୍ରମାଣଶାସ୍ତ୍ରଭିତ୍ତିକ ହେଲେହେଁ ଅଂଶତଃ ଏହା ଅଧିବିଦ୍ୟାଭିତ୍ତିକ ଅଟେ । ଉଦାହରଣ ସ୍ୱରୂପ ଅନେକ ବିଶେଷ ପ୍ରାଣୀ ସମ୍ବନ୍ଧରେ 'ସେ ଏକ ମନୁଷ୍ୟ' ଏଭଳି କଥା ସଙ୍ଗତ ଭାବରେ କୁହାଯାଏ । ଏହି 'ମନୁଷ୍ୟ' ଶବ୍ଦଟି ନିଷ୍ଟୟ ବିଶେଷ

'ମନୁଷ୍ୟ' ଠାରୁ ସ୍ୱତନ୍ତ୍ର ଅଟେ । ପୁନଶ୍ଚ କୌଣସି ଏକ ମନୁଷ୍ୟର ଜନ୍ମ ବା ମୃତ୍ୟୁ ହେଲେ ଏହି ବିଶେଷ 'ମନୁଷ୍ୟ'ର ଜନ୍ମ, ମୃତ୍ୟୁ ହୁଏ ନାହିଁ । ଦେଶ ଏବଂ କାଳରେ ଏହି ସାମାନ୍ୟ ନ ଥିବାରୁ ଏହି ସାମାନ୍ୟ ବା ଜାତି ନିତ୍ୟ ଅଟେ ।

ଆଦର୍ଶ ମନୁଷ୍ୟ ବା ଜାତି ସତ୍ୟ କାରଣ ଏହା ଅବିନଶ୍ୱର । ବିଶେଷ ବିଶେଷ ମନୁଷ୍ୟ ଆଦର୍ଶ ମନୁଷ୍ୟର ତ୍ରୁଟିପୂର୍ଣ୍ଣ ପରିପ୍ରକାଶ ମାତ୍ର ।

ପ୍ଳେଟୋଙ୍କ ମତରେ ଆକାର ବା ଆଦର୍ଶର ତିନିଗୋଟି ବୈଶିଷ୍ଟ୍ୟ ବିଦ୍ୟମାନ । ପ୍ରଥମତଃ ପ୍ରତ୍ୟେକ ଆକାର ବା ଆଦର୍ଶ ଏକ ଅଟେ । ଏହା ବହୁ ଆଦର୍ଶ ନୁହେଁ । ଦ୍ୱିତୀୟତଃ ଆକାର ଅପରିଣାମୀ ଓ ଅନାଦି । ତୃତୀୟତଃ ଆକାର ଆଦର୍ଶ ଏବଂ ପୂର୍ଣ୍ଣ । ଯେଉଁ ବିଶେଷ ବିଶେଷ ଆକାରର ବିଶେଷ ବିଶେଷ ଅଭିବ୍ୟକ୍ତି ହୁଏ ସେହି ବିଶେଷ ଆକାରରେ ଉପସ୍ଥାପିତ ଆଦର୍ଶ ରୂପାୟନରେ ଚେଷ୍ଟା କରିହୁଏ । ଏହି ରୂପାୟନ କେବେ ହେଲେ ସମ୍ପୂର୍ଣ୍ଣ ହୁଏ ନାହିଁ । ସବୁ ସମୟରେ ଏହା ଅପୂର୍ଣ୍ଣ ବା ତ୍ରୁଟିପୂର୍ଣ୍ଣ ହୁଏ । କିନ୍ତୁ ଆଦର୍ଶ କେତେବେଳେ ହେଲେ ଅପୂର୍ଣ୍ଣ ବା ତ୍ରୁଟିପୂର୍ଣ୍ଣ ନୁହେଁ ।

ପ୍ଲେଟୋ ଆକାର ବା ଜାତିକୁ ଧାରଣା ବୋଲି ମଧ୍ୟ କହିଛନ୍ତି । ଇଂରାଜୀରେ ଯେତେବେଳେ ଆମେ କହୁଁ "That is only an idea, nothing real", ସେତେବେଳେ idea ଶବ୍ଦଟିର ଅର୍ଥ ସୁସ୍ପଷ୍ଟ ଭାବେ ପ୍ରକାଶ ପାଇଥାଏ । କିନ୍ତୁ ପ୍ଲେଟୋ ତାଙ୍କର ଧାରଣା ଶବ୍ଦଟିକୁ ଏହି ଅର୍ଥରେ ବ୍ୟବହାର କରିନାହାନ୍ତି । ସେ ଧାରଣା ଶବ୍ଦଟିର ଅର୍ଥ ବିଷୟଗତ ବସ୍ତୁ ସ୍ୱରୂପ ବୋଲି କହିଛନ୍ତି ।

'ସିମ୍ପୋସିୟମ୍' ଗ୍ରନ୍ଥରେ ପ୍ଲେଟୋ ସ୍ୱରୂପଗତ ବା ପରିପୂର୍ଣ୍ଣ ସୌନ୍ଦର୍ଯ୍ୟର ବିଷୟ ଆଲୋଚନା କରିଛନ୍ତି । ପ୍ଲେଟୋ ସୌନ୍ଦର୍ଯ୍ୟର ଧାରଣା ଏବଂ ପରିପୂର୍ଣ୍ଣ ସୌନ୍ଦର୍ଯ୍ୟ ଉଭୟଙ୍କୁ ଅଭିନ୍ନ ଅର୍ଥରେ ବ୍ୟବହାର କରିଛନ୍ତି । ଉଭୟେ ବିଷୟଗତ ବସ୍ତୁ ସ୍ୱରୂପ ବୋଲି ପ୍ଲେଟୋ କହିଛନ୍ତି ।

ପୁନଶ୍ଚ ପ୍ଲେଟୋ ଏହି ଇନ୍ଦ୍ରିୟଗ୍ରାହ୍ୟ ଜଗତରେ ଦେମନ୍ତିରଲ ଏହି ଜଗତ ଅତି-କ୍ରାନ୍ତ ଏକ ଆଧ୍ୟାତ୍ମିକ ଜଗତରେ ଅସ୍ତିତ୍ୱ ସ୍ୱୀକାର କରିଛନ୍ତି ଏବଂ ତାଙ୍କ ମତରେ ସମସ୍ତ ଆକାର ବା ଜାତି ଏହି ଆଧ୍ୟାତ୍ମିକ ଜଗତର ବିଷୟ ଅଟେ । ପାରମେନାଇଡ଼ିସ୍ ଏବଂ ସିମ ପୋସିୟମ୍ ଗ୍ରନ୍ଥରେ ପ୍ଲେଟୋ ଜାତି ବା ଆକାର ବା ଧାରଣା ସହିତ ବିଶେଷ ବସ୍ତୁ ବା ବ୍ୟକ୍ତିର ସମ୍ପର୍କ ସମ୍ବନ୍ଧରେ ସ୍ପଷ୍ଟ ମତ ପ୍ରକାଶ କରିଅଛନ୍ତି । ଏହି ସମ୍ବନ୍ଧକୁ ଦୁଇଟି ଭାବରେ ବୁଝାଇଛନ୍ତି ।

(୧) ବିଶେଷ ବସ୍ତୁ ବା ବ୍ୟକ୍ତି ଜାତିର ଅଂଶ ଗ୍ରହଣକାରୀ ।

(୨) ବିଶେଷ ବସ୍ତୁ ବା ବ୍ୟକ୍ତି ଜାତି ବା ଧାରଣାର ନକଲ ରୂପୀ । ପ୍ଲେଟୋ ଜାତିକୁ ବ୍ୟକ୍ତିଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ବୋଲି କହିଛନ୍ତି ଏବଂ ତାଙ୍କ ମତରେ ଜାତି ବ୍ୟକ୍ତିଠାରୁ ସ୍ୱତନ୍ତ୍ର ଭାବେ ରହିପାରେ କିନ୍ତୁ ଆରିଷ୍ଟଟଲ ତାଙ୍କର Metaphysics ଗ୍ରନ୍ଥରେ ପ୍ଲେଟୋଙ୍କ ଏହି ଉକ୍ତିକୁ ସମାଲୋଚନା କରିଛନ୍ତି ।

ଆରିଷ୍ଟଟଲ୍ ଅଧିବିଦ୍ୟା ଓ ଜଡ଼୍ୟ ଦ୍ରବ୍ୟ ଆଲୋଚନା କରିବାକୁ ଯାଇ ପ୍ରଥମେ ପ୍ଲେଟୋଙ୍କ ଜାତିବାଦ ତତ୍ତ୍ୱକୁ ଖଣ୍ଡନ କରିଛନ୍ତି । ପ୍ରଥମତଃ ତାଙ୍କ ମତରେ,—

ପ୍ଲେଟୋଙ୍କ ଜାତିବାଦ ଏକ କଳ୍ପନା ବା ଧାରଣା ନୁହେଁ ବୋଲି କହିଛନ୍ତି ଏବଂ ପ୍ଲେଟୋଙ୍କ ଉକ୍ତି "ଜାତି ବ୍ୟକ୍ତି ବ୍ୟତୀତ ରହିପାରେ" ଏ କଥାକୁ ମଧ୍ୟ ଅସ୍ୱୀକାର କରିଛନ୍ତି । ଦ୍ୱିତୀୟତଃ ଆରିଷ୍ଟଟଲଙ୍କ ମତରେ ପ୍ଲେଟୋଙ୍କ ଜାତିବାଦ ଅପ୍ରୟୋଜନୀୟ । କାରଣ ଆରିଷ୍ଟଟଲଙ୍କ ମତାନୁସାରେ ପ୍ଲେଟୋଙ୍କ ଜାତିବାଦ ପ୍ରତ୍ୟକ୍ଷଗ୍ରାହ୍ୟ ବସ୍ତୁଗୁଡ଼ିକର ସମାନ୍ତରାଳ ଆଉ ଏକ ଜାତିକୁ ସ୍ୱୀକାର କରେ । ଜଗତରେ ଅସଂଖ୍ୟ ବସ୍ତୁର ଅସ୍ତିତ୍ୱ ବ୍ୟାଖ୍ୟା କରିବାକୁ ହେଲେ ଏହି ଜାତି ପ୍ରୟୋଜନୀୟ, କିନ୍ତୁ ଏହି ଅସଂଖ୍ୟ ବସ୍ତୁଗୁଡ଼ିକୁ ସ୍ୱୀକାର କରିବା ନିମନ୍ତେ ପ୍ଲେଟୋଙ୍କ ପରି ଅସଂଖ୍ୟ ଜାତି ସ୍ୱୀକାର କରିଗଲେ ଉପରୋକ୍ତ ଉଦ୍ଦେଶ୍ୟ ସାଧିତ ହେଉନାହିଁ । ପ୍ଲେଟୋଙ୍କର ଏହି କାର୍ଯ୍ୟ ନିମ୍ନଲିଖିତ ରୂପେ ତୁଳନା କରାଯାଇପାରେ । "ଏପରି କୌଣସି ଲୋକ ଯେ କି ଅଳ୍ପ ସଂଖ୍ୟାରେ ଗଣନା କରିବା ଅସୁବିଧା ଭାବି ଗଣନାକୁ ସହଜ କରିବାକୁ ତାଇ ସଂଖ୍ୟାକୁ ଦୁଇଗୁଣ କରିଥାଏ" ।

(Plato is like a man who unable to count with a small number thinks that he will find it easier todo so if he doubles the number.—*(Meta Physics, 990/34/8.)*

ତୃତୀୟତଃ ଆରିଷ୍ଟଟଲଙ୍କ ମତରେ ବସ୍ତୁଜ୍ଞାନ ନିମନ୍ତେ ଜାତି ଅପ୍ରୟୋଜନୀୟ କିନ୍ତୁ ପ୍ଲେଟୋଙ୍କ ମତରେ ଜାତି ବିଶେଷ ବସ୍ତୁ ମଧ୍ୟରେ ନ ଥାଏ । ସୁତରାଂ ବିଶେଷ ବସ୍ତୁ ସମ୍ବନ୍ଧରେ ଜ୍ଞାନ ନିମିତ୍ତ ଜାତି ଅପ୍ରୟୋଜନୀୟ । ପୁନଶ୍ଚ ପ୍ଲେଟୋ ବ୍ୟକ୍ତି ମଧ୍ୟରେ ଜାତିର ରୂପାୟନ କଥା କହିଛନ୍ତି । ଜାତି ସମ୍ବନ୍ଧରେ ଜ୍ଞାନ ଥିଲେ ବ୍ୟକ୍ତି ମଧ୍ୟରେ ତା କିପରି ରୂପାୟିତ ହୋଇଛି ଜଣାଯିବ । ଉଦାହରଣ ସ୍ୱରୂପ :—ଯେପରି ଶଯ୍ୟାର ଆଦର୍ଶ ରୂପ ଜାଣିଥିଲେ ବାସ୍ତବ ଶଯ୍ୟାର ଗୁଣାଗୁଣ ବିଧାନ କରାଯାଏ ସେହିପରି ବ୍ୟକ୍ତିର ଆଦର୍ଶ ଜାତିର ଜ୍ଞାନ ଥିଲେ ବ୍ୟକ୍ତି ସେହି ଆଦର୍ଶ ରୂପାୟନ ନିମନ୍ତେ ଚେଷ୍ଟା କରିଥାଏ ।

ଚତୁର୍ଥତଃ ଆରିଷ୍ଟଟଲଙ୍କ ମତରେ ପ୍ଲେଟୋର ଗତି ସମ୍ବନ୍ଧୀୟ ବ୍ୟାଖ୍ୟାରେ ମଧ୍ୟ ଜାତି ଅପ୍ରୟୋଜନୀୟ । ବ୍ୟକ୍ତିର ଅସ୍ତିତ୍ୱ ଜାତିର ଅସ୍ତିତ୍ୱ ଉପରେ ନିର୍ଭରଶୀଳ ହେଲେ ହେଁ ଜାତି ବ୍ୟକ୍ତିର ଗତି ବ୍ୟାଖ୍ୟା କରିବାରେ ଅସମର୍ଥ । ପ୍ଲେଟୋଙ୍କ ମତରେ ଜାତି ଗତିହୀନ ଏବଂ ବ୍ୟକ୍ତି ଜାତିର ଅନୁକରଣ ମାତ୍ର । ଯଦି ଜାତି ଗତିହୀନ ତାହେଲେ ବ୍ୟକ୍ତି ମଧ୍ୟ ଗତିହୀନ ହେବା ସ୍ୱାଭାବିକ । କିନ୍ତୁ ଆମ୍ଭେମାନେ ବ୍ୟକ୍ତିର ଗତି ଦେଖିବାକୁ ପାଇ ଥାଉ । ଜାତି ଯେ ଗତିର ବ୍ୟାଖ୍ୟା କରିବାରେ ଅସମର୍ଥ ଏ କଥା ବିଷୟରେ ପ୍ଲେଟୋ ସମ୍ପୂର୍ଣ୍ଣ ସଚେତନ ଥିଲେ । ସେଥିପାଇଁ ପ୍ଲେଟୋ ବ୍ୟକ୍ତିର ଗତି ବ୍ୟାଖ୍ୟା ନିମନ୍ତେ ଡେମିୟୁର୍ଜର ଏକ ଧାରଣା ଅବତାରଣା କରିଛନ୍ତି । ଅର୍ଥାତ୍ ଈଶ୍ୱରଙ୍କ ପ୍ରଜ୍ଞା ଏହି ଜଗତରେ ଅନୁସ୍ୟୂତ ।

ପଞ୍ଚମତଃ ଜାତି ଇନ୍ଦ୍ରିୟ ଗ୍ରାହ୍ୟ ବସ୍ତୁ ବିଷୟରେ ବ୍ୟାଖ୍ୟା କରିଥାଏ । କିନ୍ତୁ ତା ଫଳରେ 'ଜାତି ଇନ୍ଦ୍ରିୟ ଗ୍ରାହ୍ୟ' ଏ କଥା ପ୍ରମାଣିତ । ତା ହେଲେ ଆଦର୍ଶ ମନୁଷ୍ୟ ବା ଜାତି ମନୁଷ୍ୟ [ଯେପରି ସକ୍ରେଟିସ୍] ଇନ୍ଦ୍ରିୟଗ୍ରାହ୍ୟ ହେବେ । କେବଳ ପାର୍ଥକ୍ୟ ଏହି ଯେ ବ୍ୟକ୍ତି ଅନିତ୍ୟ ଓ ଜାତି ନିତ୍ୟ । ସୁତରାଂ ଜାତି ଇନ୍ଦ୍ରିୟ ଗ୍ରାହ୍ୟ ନିତ୍ୟ ଓ ବ୍ୟକ୍ତି ଇନ୍ଦ୍ରିୟଗ୍ରାହ୍ୟ ଅନିତ୍ୟ ଅଟେ ।

କିନ୍ତୁ ଏହି ଅଭିଯୋଗ ଯୁକ୍ତିଯୁକ୍ତ ବୋଲି ମନେ ହୁଏ ନାହିଁ । କାରଣ ଜାତି ମନୁଷ୍ୟ ଯଦି ବ୍ୟକ୍ତି ମନୁଷ୍ୟର ପୁନରାବୃତ୍ତି ହୁଏ ତେବେ ବ୍ୟକ୍ତି ମନୁଷ୍ୟ ଭଳି ଜାତି ମନୁଷ୍ୟ ମଧ୍ୟ ଇନ୍ଦ୍ରିୟଗ୍ରାହ୍ୟ ଅଟେ । କିନ୍ତୁ ପ୍ଲେଟୋଙ୍କର ଜାତି ମନୁଷ୍ୟ କଥାଟି ଏହି ଅର୍ଥରେ ପ୍ରୟୋଗ କରାଯାଇ ନାହିଁ । ଜାତି ମନୁଷ୍ୟ କଥାଟି ପ୍ଲେଟୋଙ୍କର ଏକ ଧାରଣା ମାତ୍ର । ତେଣୁ ଧାରଣା ଇନ୍ଦ୍ରିୟ ଗ୍ରାହ୍ୟ ଏହିପରି ଯୁକ୍ତି ଅସଙ୍ଗତ ।

ଆରିଷ୍ଟଟଲଙ୍କ ମତରେ ଜାତିବାଦ ଗୋଟିଏ ଅସମ୍ଭବ ମତବାଦ ଅଟେ । ଏହାର କାରଣ ନିମ୍ନରେ ଦର୍ଶାଯାଇଅଛି ।

[କ] ଜାତି ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁର ସ୍ୱରୂପ ପ୍ରକାଶ କରେ । କିନ୍ତୁ ପ୍ଲେଟୋଙ୍କ ମତରେ ଜାତି ବ୍ୟକ୍ତିଠାରୁ ସ୍ୱତନ୍ତ୍ର । ତାହେଲେ ଯେଉଁ ଜାତି ବ୍ୟକ୍ତିଠାରୁ ସ୍ୱତନ୍ତ୍ର ସେ ଜାତି ପକ୍ଷରେ ବ୍ୟକ୍ତିର ସ୍ୱରୂପ ପ୍ରକାଶ କରିବା ଅସମ୍ଭବ । ତେଣୁ ପ୍ଲେଟୋ ଜାତି ଓ ବ୍ୟକ୍ତି ସମ୍ପର୍କରେ ଅଂଶ ଗ୍ରହଣ ନୁକରଣ, ପ୍ରଭୃତି ଶବ୍ଦ ବ୍ୟବହାର କରିଛନ୍ତି । ଆରିଷ୍ଟଟଲଙ୍କ ମତରେ ପ୍ଲେଟୋଙ୍କର ଜାତିକୁ ଆଦର୍ଶ ଓ ବ୍ୟକ୍ତି ଏହି ଆଦର୍ଶର ଅନୁକରଣ ବା ବ୍ୟକ୍ତି ହିଁ ଆଦର୍ଶର ଅଂଶୀଦାର, ପ୍ରଭୃତି କଥା କେବଳ ଅନର୍ଥକ ଉପମା ପ୍ରୟୋଗର ଗୋଟିଏ ଦୃଷ୍ଟାନ୍ତ ମାତ୍ର । (To say that (i.e. the

forms) are patterns and the other things share in them, is to use empty words and poetical metaphors]

—Metaphysics, 1079-24/6

(ଖ) 'ଜାତି ଠାରୁ ବ୍ୟକ୍ତି ଉତ୍ପନ୍ନ' ଏ କଥା ପ୍ଲେଟୋ କହିଛନ୍ତି । କିନ୍ତୁ 'ଠାରୁ' ଶବ୍ଦଟିର କୌଣସି ପ୍ରଚଳିତ ଅର୍ଥରେ ଜାତି ଠାରୁ ବ୍ୟକ୍ତି ଉତ୍ପନ୍ନ ନୁହେଁ । ଜାତି ଯଦି ପ୍ଲେଟୋଙ୍କ ମତରେ ନିତ୍ୟ ଓ ଆଧ୍ୟାତ୍ମିକ ହୁଏ ତାହେଲେ ଅନିତ୍ୟ ଓ ଅଧ୍ୟାତ୍ମିକ ବସ୍ତୁ ରୂପୀ ଏହି ଜାତିଠାରୁ ଆସିବା ଅସମ୍ଭବ । ଏହି ବିଷୟରେ ପ୍ଲେଟୋ କୌଣସି ସ୍ପଷ୍ଟ ଧାରଣା ଦେଇନାହାନ୍ତି । ଏହା ପ୍ଲେଟୋଙ୍କ ଜାତିବାଦ ବିରୁଦ୍ଧରେ ଆରିଷ୍ଟଟଲଙ୍କ ମୁଖ୍ୟ ଅଭିଯୋଗ ।

(ଗ) ଜାତିର ପ୍ରକୃତି ସମ୍ବନ୍ଧରେ ବ୍ୟାଖ୍ୟା କରିବାକୁ ଯାଇ ପ୍ଲେଟୋ ଜାତିକୁ ବ୍ୟକ୍ତି ଭଳି ବିଶେଷ ବସ୍ତୁ ରୂପେ ବର୍ଣ୍ଣନା କରିଛନ୍ତି ଜାତିର ଯଥାର୍ଥ ରୂପ ସାମାନ୍ୟ ବା ଜାତି ହୋଇ ରହିପାରିନାହିଁ । କାରଣ ଜାତି ମନୁଷ୍ୟ ସକ୍ରେଟିସ୍ଙ୍କ ଭଳି ଓ ବ୍ୟକ୍ତି ମନୁଷ୍ୟ ଭଳି ମଧ୍ୟ ବିଶେଷ । କାରଣ ସକ୍ରେଟିସ୍ ଯେପରି ଅନ୍ୟାନ୍ୟ ମନୁଷ୍ୟଙ୍କ ଠାରୁ ଭିନ୍ନ ଜାତି ମନୁଷ୍ୟ ମଧ୍ୟ ଅନ୍ୟାନ୍ୟ ଜାତିଠାରୁ ଭିନ୍ନ ।

ଏହି ବିଷୟରେ ବର୍ଟ୍ରାଣ୍ଡ ରସେଲ୍ କହିଛନ୍ତି ଯେ ପ୍ଲେଟୋଙ୍କ ଜାତିବାଦ ବିରୁଦ୍ଧରେ ଆରିଷ୍ଟଟଲଙ୍କ ଯୁକ୍ତିମାନଙ୍କ ମଧ୍ୟରେ 'ତୃତୀୟ ମନୁଷ୍ୟର ଯୁକ୍ତି' (The argument of the third man, *History of Western hilosophy, P. 184*) ସର୍ବାପେକ୍ଷା ଉଲ୍ଲେଖଯୋଗ୍ୟ । ଯୁକ୍ତିଟି ନିମ୍ନରେ ଦିଆଗଲା ।

'ଆଦର୍ଶ ମନୁଷ୍ୟ'ର ସଦୃଶ ହୋଇ ଯଦି ଜଣେ ମନୁଷ୍ୟ ପ୍ରକୃତ ମନୁଷ୍ୟ ହୁଏ ତାହେଲେ ତୃତୀୟ ଆଉ ଏକ ଆଦର୍ଶ ମନୁଷ୍ୟ କଥା ଭାବିବା ଦରକାର ଯାହା ସହିତ ସାଦୃଶ୍ୟ ନିମନ୍ତେ ସାଧାରଣ ମନୁଷ୍ୟ ଏବଂ ଆଦର୍ଶ ମନୁଷ୍ୟ ଉଭୟେ ମନୁଷ୍ୟ ।

ପ୍ଲେଟୋଙ୍କ ଜାତିବାଦ ବିରୁଦ୍ଧରେ ଏହିପରି ଅନେକ ଯୁକ୍ତି ଆରିଷ୍ଟଟଲ କରିଛନ୍ତି । ପ୍ରକୃତରେ ପ୍ଲେଟୋ ଜାତିକୁ ବ୍ୟକ୍ତିଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଏବଂ ଅତିବର୍ତ୍ତୀ କହିବା ସ୍ଥଳେ ଆରିଷ୍ଟଟଲ ଜାତିକୁ ବ୍ୟକ୍ତି ମଧ୍ୟରେ ଅନୁସ୍ୟୂତ ବୋଲି ବର୍ଣ୍ଣନା କରିଛନ୍ତି । ପ୍ଲେଟୋ ବିମୂର୍ତ୍ତ ଜାତି କହିଲାବେଳେ ଆରିଷ୍ଟଟଲ ମୂର୍ତ୍ତ ଜାତି ବୋଲି ଧାରଣାର ଅବତାରଣା କରିଛନ୍ତି ।

# ଆରିଷ୍ଟଟଲଙ୍କ ଦ୍ରବ୍ୟବାଦ

ଆରିଷ୍ଟଟଲ ଦ୍ରବ୍ୟ ଶବ୍ଦର ଏକ ଗୌଣ ଅର୍ଥ ସ୍ୱୀକାର କରିଛନ୍ତି । ଏହି ଅର୍ଥରେ ବ୍ୟକ୍ତିର ଆକାରଗତ ଦିଗକୁ ଦ୍ରବ୍ୟ କୁହାଯାଏ । ସବୁ ଦ୍ରବ୍ୟର ଉପାଦାନ ଥିବାର ସମ୍ଭାବନା ନାହିଁ ନିତ୍ୟ ବସ୍ତୁ ମଧ୍ୟ ଅନେକ ଅଛି । ଏହି ବସ୍ତୁମାନଙ୍କ ମଧ୍ୟରୁ ଯେଉଁ ବସ୍ତୁ ନଭଃସ୍ଥଳସ୍ଥ ସେଗୁଡ଼ିକ ବ୍ୟତୀତ ଅନ୍ୟ ସବୁ ବସ୍ତୁ ଉପାଦାନହୀନ । ଏହି ବସ୍ତୁଗୁଡ଼ିକର କେବଳ ଆକାର ଅଛି ।

ଆରିଷ୍ଟଟଲଙ୍କ ମତରେ କୌଣସି କୌଣସି ନିତ୍ୟ ବସ୍ତୁଠାରେ ଆକାର ଉପାଦାନଠାରୁ ସ୍ୱତନ୍ତ୍ର ଭାବରେ ଥାଏ । ସେ ଆକାରକୁ ଉପାଦାନଠାରୁ ଅଧିକ ସତ୍ୟ ବୋଲି ମନେ କରିଛନ୍ତି । ଏହି ଉପାଦାନ ଏବଂ ଆକାର ସମ୍ବନ୍ଧୀୟ ମତବାଦରେ ସେ ଅବ୍ୟକ୍ତ ଓ ବ୍ୟକ୍ତର ପାର୍ଥକ୍ୟ ସମ୍ବନ୍ଧରେ କହିଛନ୍ତି । ଅବିମିଶ୍ର ଉପାଦାନକୁ ଆକାରର ଅବ୍ୟକ୍ତ ରୂପ ବୋଲି ସେ କହିଛନ୍ତି । ବସ୍ତୁର ପରିବର୍ତ୍ତନ ବା ଅଭିବ୍ୟକ୍ତିରେ ଯେଉଁ ବସ୍ତୁର ପରିବର୍ତ୍ତନ ବା ଅଭିବ୍ୟକ୍ତି ଘଟେ ତାର ଆକାର ପରିବର୍ତ୍ତନର ପୂର୍ବାପେକ୍ଷା ପରିବର୍ତ୍ତନର ପରବର୍ତ୍ତୀ କାଳରେ ଅଧିକ ବ୍ୟକ୍ତ ବୋଲି ମନେ ହୁଏ । ମୁଖ୍ୟତଃ କହିବାକୁ ଗଲେ ଯେଉଁ ବସ୍ତୁ ଗତିଶୀଳ, ପରିମାଣ ସାଧନଶୀଳ, ବିକାଶଶୀଳ ବହିସ୍ଥ କୌଣସି ଦ୍ରବ୍ୟ ଦ୍ୱାରା ପ୍ରତି-ରୋଧିତ ନ ହେଲେ ନିଜର ଶକ୍ତି ବଳରେ ଯାହା ଅନ୍ୟ କିଛି ପରିବର୍ତ୍ତିତ ହେବାର ଶକ୍ତି ବା ସାମର୍ଥ୍ୟ ରଖେ, ତାହା ହିଁ ଶକ୍ତ ବା ଅବ୍ୟକ୍ତ । ଉଦାହରଣସ୍ୱରୂପ ଗୋଟିଏ ବୃକ୍ଷର ମଞ୍ଜିକୁ ବୃକ୍ଷର ଅବ୍ୟକ୍ତ ଅବସ୍ଥା କୁହାଯାଏ । ଅବ୍ୟକ୍ତ ଯେତେବେଳେ ବସ୍ତୁରୂପେ ରୂପାନ୍ତରିତ ହୁଏ । ସେତେବେଳେ ବ୍ୟକ୍ତ ହୋଇଥାଏ ଯେପରି ବୃକ୍ଷର ବୀଜ ଅବ୍ୟକ୍ତ ଓ ବୃକ୍ଷ ବ୍ୟକ୍ତ । ବୃକ୍ଷର ବୀଜ ମଧ୍ୟ ଉପାଦାନ ଏବଂ ଏହି ବୀଜ ବୃକ୍ଷରୂପୀ ଆକାରର ଅବ୍ୟକ୍ତ ଅବସ୍ଥା ବୀଜ ଯେତେବେଳେ ବୃକ୍ଷ ରୂପେ ରୂପାନ୍ତରିତ ହୁଏ ସେତେବେଳେ ବୀଜର ଅବ୍ୟକ୍ତ ଅବସ୍ଥା ବୃକ୍ଷରେ ବ୍ୟକ୍ତ ହୋଇଥାଏ । ବୀଜର ବୃକ୍ଷ ରୂପେ ରୂପାନ୍ତରିତ ହେବାର ଶକ୍ତି ଅଛି ବୋଲି ବୀଜ ଶକ୍ତ ବା ବୃକ୍ଷର ଅବ୍ୟକ୍ତ ରୂପ ଏବଂ ବୀଜ ବୃକ୍ଷ ଆକାରରେ ହୋଇଥାଏ ବୋଲି ବୃକ୍ଷ ବ୍ୟକ୍ତ ।

ତେଣୁ ଏଥିରୁ ହିଁ ଜଣାଯାଏ ଯେ ଗତି ବା ପରିବର୍ତ୍ତନ ନିମନ୍ତେ ଉପାଦାନ ଓ ଆକାର ଏବଂ ଅବ୍ୟକ୍ତ ଓ ବ୍ୟକ୍ତ ଉଭୟରେ ପ୍ରୟୋଜନୀୟ । ଏହି ଦୁଇଟି ବ୍ୟତୀତ ଆରି-ଷ୍ଟଟଲ ଅନ୍ୟ ଏକ ନିୟାମକର ବିଷୟ ମଧ୍ୟ କହିଛନ୍ତି । ଏହି ତୃତୀୟ ନିୟାମକଟି ଅଭାବ ବା (Privation or exigency) ଅଟେ । ଉଦାହରଣ ସ୍ୱରୂପ :—ଜଳରୁ ବାଷ୍ପ ଜାତ ହୁଏ । କିନ୍ତୁ କେବଳ ଜଳରୁ ବାଷ୍ପ ଜାତ ହେବା ସମ୍ଭବ ନୁହେଁ । ଜଳର ବିଶେଷ ପରିମାଣରେ ଉତ୍ତପ୍ତ ଅବସ୍ଥାରେ ବାଷ୍ପ ଜାତ ହୋଇଥାଏ ଅର୍ଥାତ୍ ଜଳ ମଧ୍ୟରେ

ବାଷ୍ପ ଜାତର କ୍ଷମତା ଥିଲେ ମଧ୍ୟ କେବଳ ଜଳ ବାଷ୍ପ ନୁହେଁ । ବାଷ୍ପ ଆକାର ଆସିବା ନିମନ୍ତେ ବିଶେଷ ପରିମାଣରେ ଉତ୍ତାପ ପ୍ରୟୋଜନ । ଅତଏବ ଏହି ଉତ୍ତାପର ଅଭାବରୁହିଁ ଜଳ ବାଷ୍ପ ଆକାର ଧାରଣ କରିପାରେ ନାହିଁ । ଏହି ଅଭାବକୁ ହିଁ ଆରିଷ୍ଟଟଲ ତୃତୀୟ ନିୟାମକ ବୋଲି କହିଛନ୍ତି । ତାଙ୍କ ମତରେ ଅଭାବ ଉପାଦାନ ଓ ଆକାର ଭଳି ଗତିର ସଦର୍ଥକ ବା ଭାବାତ୍ମକ ନିୟାମକ ନୁହେଁ ସୁନିଷ୍ଟ ଏହି ଅଭାବ ସ୍ୱୀକୃତ ନ ହେଲେ ଗତି ସମ୍ବନ୍ଧୀୟ ସମ୍ପୂର୍ଣ୍ଣ ବ୍ୟାଖ୍ୟା ଅସମ୍ଭବ ।

ଉପାଦାନ ଓ ଆକାର ମଧ୍ୟରେ ପାର୍ଥକ୍ୟ ବିଦ୍ୟମାନ । ଯେଉଁ କ୍ଷେତ୍ରରେ ଉପାଦାନ ଓ ଆକାର ତାହା ଅନ୍ୟ କ୍ଷେତ୍ରରେ ଆକାର ଓ ଉପାଦାନ ହୋଇ ନାହିଁ । ଉଦାହରଣ ସ୍ୱରୂପ ;—ଦେହ ସମ୍ବନ୍ଧରେ ଆତ୍ମା ଆକାର କିନ୍ତୁ ବ୍ରହ୍ମ ସମ୍ବନ୍ଧରେ ଉପାଦାନ ଅଟେ ।

ବିଶ୍ୱର ସକଳ ବସ୍ତୁ ଏକ ବିଶେଷ କ୍ରମରେ ସଜ୍ଜିତ ହୋଇ ରହିଅଛି । ଏହି କ୍ରମର ସର୍ବନିମ୍ନରେ ଆଦିମ ଉପାଦାନ ବିଦ୍ୟମାନ । ଏହି ଉପାଦାନ ସମ୍ପୂର୍ଣ୍ଣଭାବେ ଆକାରହୀନ ଅଟେ । କ୍ରମର ସର୍ବୋପରେ ଅନ୍ତିମ ଆକାର ବିଦ୍ୟମାନ । ଏହି ଆକାର ଉପାଦାନହୀନ । ଏହାକୁ ବିଶୁଦ୍ଧ ଆକାର କୁହାଯାଏ । ଆରିଷ୍ଟଟଲ ଏହି ଅନ୍ତିମ ଆକାରକୁ ଈଶ୍ୱର ଆଖ୍ୟା ଦେଇଛନ୍ତି । ଆଦିମ ଉପାଦାନ ଓ ଅନ୍ତିମ ଆକାର ମଧ୍ୟରେ ଥିବା ବସ୍ତୁଗୁଡ଼ିକର ଉପାଦାନ ସହିତ ଆକାର ମଧ୍ୟ ଅଛି ।

ଉପାଦାନ ଓ ଆକାର ବ୍ୟକ୍ତ ଓ ଅବ୍ୟକ୍ତ ରୂପେ ପ୍ରକାଶ ପାଇଥାଏ । କାଳିକ ନିୟମ କ୍ରମେ ଅବ୍ୟକ୍ତ ପୂର୍ବବର୍ତ୍ତୀ ଅଟେ । କିନ୍ତୁ ନ୍ୟାୟକ୍ରମେ ବ୍ୟକ୍ତ ପୂର୍ବବର୍ତ୍ତୀ ଓ ଅବ୍ୟକ୍ତ ପରବର୍ତ୍ତୀ ଅଟେ । ଉଦାହରଣ ସ୍ୱରୂପ, ଗଛର ମଞ୍ଜିରୁ ବୃକ୍ଷ ବ୍ୟକ୍ତ ହୁଏ ନାହିଁ ଅର୍ଥାତ୍ ଯେଉଁ ମଞ୍ଜିରୁ ବୃକ୍ଷଜାତ ହେବା ଅସମ୍ଭବ ହୋଇପାରେ ବ୍ୟକ୍ତ ବୃକ୍ଷ ପୂର୍ବବର୍ତ୍ତୀ ଅଟେ । ଏହା ନ୍ୟାୟସଙ୍ଗତ ଦୃଷ୍ଟିକୋଣରୁହିଁ ସମ୍ଭବ ଅଟେ । ସେଥିପାଇଁ ନ୍ୟାୟକ୍ରମେ ବ୍ୟକ୍ତ ପୂର୍ବବର୍ତ୍ତୀ ଓ ଅବ୍ୟକ୍ତ ପରବର୍ତ୍ତୀ ଅଟେ । ଏହି ଦୃଷ୍ଟିଭଙ୍ଗିରେ ଆରିଷ୍ଟଟଲଙ୍କ 'ଉଦ୍ଦେଶ୍ୟ କାରଣ' ସର୍ବାପେକ୍ଷା ପୂର୍ବବର୍ତ୍ତୀ ଅଟେ । କାରଣ ଉଦ୍ଦେଶ୍ୟହିଁ ସକଳ କାର୍ଯ୍ୟକୁ ନିୟନ୍ତ୍ରିତ କରିଥାଏ । ସେଥିପାଇଁ ଆରିଷ୍ଟଟଲ ବିଶ୍ୱର ଚରମ ଉଦ୍ଦେଶ୍ୟ କାରଣକୁ ଆଦି କାରଣ ବୋଲି କହିଛନ୍ତି ।

## ଉଦ୍ଦେଶ୍ୟବାଦ

ଆରିଷ୍ଟଟଲ ତାଙ୍କ ଉଦ୍ଦେଶ୍ୟବାଦରେ ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରମାଣ କରିବା ନିମନ୍ତେ ଆଦିକାରଣର ଅବତାରଣା କରିଛନ୍ତି । ସାଧାରଣତଃ ଏକ ଘଟଣ ବ୍ୟାଖ୍ୟା

ଅନ୍ୟ ଏକ ଗତି ଦ୍ୱାରା କରାଯାଇଥାଏ । ଯେପରି ଏକ ପେଣ୍ଡୁଲ ଗତି ଅନ୍ୟ ଏକ ଘେଣ୍ଟାର ଗତିଦ୍ୱାରା ହିଁ ସାଧାରଣତଃ ବ୍ୟାଖ୍ୟା କରି ହୋଇଥାଏ । କିନ୍ତୁ ଏପରି ଏକ ଗତିର ବ୍ୟାଖ୍ୟା ଅନ୍ୟ ଏକ ଗତି ଦ୍ୱାରା କରିଗଲେ ଏହି ବ୍ୟାଖ୍ୟା ପ୍ରକ୍ରିୟା ଅନନ୍ତ ହୋଇ ରହିବ । ଏହା କେବେବେଳେ ହେଲେ ଶେଷ ହେବନାହିଁ ଏବଂ ଅନବସ୍ଥା ଦୋଷ ଦେଖାଦେବା ସ୍ୱାଭାବିକ । ସେଥିପାଇଁ ଆରିଷ୍ଟଟଲଙ୍କ ମତରେ ଜଗତର କାରଣ ଗତିହୀନ ହେବା ବାଞ୍ଛନୀୟ । ଏହି ଗତିହୀନ କାରଣ ନିତ୍ୟ, ବ୍ୟକ୍ତ ଏବଂ ଅନ୍ତିମ ଆକାର ହେବାହିଁ ଶ୍ରେୟ । କାରଣ ଯଦି ଏହି କାରଣ ଗତିହୀନ ନହୁଏ ତେବେ ତାର ଗତିର କାରଣ ପୁନଶ୍ଚ ପ୍ରୟୋଜନ ଏବଂ ଏହି କାରଣ ଯଦି ନିତ୍ୟ ନ ହୁଏ ତେବେ ତା'ର କାରଣ ନିମନ୍ତେ ପୁନଶ୍ଚ ଏକ କାରଣ ପ୍ରୟୋଜନ ଏବଂ ଯଦି ଏହି କାରଣ ଯଦି ପରିପୂର୍ଣ୍ଣ ବ୍ୟକ୍ତ ନହୁଏ ଅବ୍ୟକ୍ତ ହୁଏ ତେବେ ଏହା ପରିବର୍ତ୍ତନରହିତ ନ ହେବାରୁ ତାର ମଧ୍ୟ କାରଣର ପ୍ରୟୋଜନ, ପୁନଶ୍ଚ ସର୍ବଶେଷରେ ଏହି କାରଣ ଯଦି ଅନ୍ତିମ ଆକାରର ନ ହୋଇ ଉପାଦାନବିଶିଷ୍ଟ ହୁଏ ତେବେ ସେହି କାରଣ ମଧ୍ୟ ପରିବର୍ତ୍ତନରହିତ ନୁହେଁ ଏବଂ ସେହି ପରିବର୍ତ୍ତନ ସମ୍ବନ୍ଧୀୟ ବ୍ୟାଖ୍ୟା ପ୍ରସଙ୍ଗରେ ପୁନଶ୍ଚ କୌଣସି ଏକ କାରଣ ପ୍ରୟୋଜନ ହେବ । ଯାହାଦ୍ୱାରା ଅନବସ୍ଥା ପ୍ରକ୍ରିୟା ଦେଖାଦେବା ସ୍ୱାଭାବିକ । ମୂଳତଃ ଏହି ଅନବସ୍ଥା ଦୋଷ ପରିହାର ନିମନ୍ତେ ଆରିଷ୍ଟଟଲ ନିତ୍ୟ ବ୍ୟକ୍ତ ଓ ଅନ୍ତିମ ଆକାରର ଏକ ଆଦି କାରଣକୁ ସ୍ୱୀକାର କରିଛନ୍ତି ଏବଂ ଆରିଷ୍ଟଟଲଙ୍କ ମତରେ ଏହି କାରଣ ହିଁ ଈଶ୍ୱର । ଆରିଷ୍ଟଟଲ ତାଙ୍କର ଏହି ଈଶ୍ୱରଙ୍କୁ ଗତିହୀନ ଓ ଆଦିପ୍ରବର୍ତ୍ତକ ଆଖ୍ୟା ଦେଇଛନ୍ତି । ଏହି ଆଦିପ୍ରବର୍ତ୍ତକହିଁ ବିଶ୍ୱର ଚରମ ଉଦ୍ଦେଶ୍ୟ । କାରଣ ଏହି ବିଶ୍ୱ ଅନ୍ତିମ ଆକାରରୂପୀ ଏହି ଆଦି ପ୍ରବର୍ତ୍ତକଙ୍କ ଶକ୍ତିମତା ଯୋଗୁ ଅଭିବ୍ୟକ୍ତ ହୋଇ ଚାଲିଛି । ଏହି ଈଶ୍ୱର ଅତିନ୍ଦ୍ରିୟ ଓ ନିତ୍ୟ ଦ୍ରବ୍ୟ ।

ଅତଏବ ଆଦି ପ୍ରବର୍ତ୍ତକ କାରଣ ଉପାଦାନ ହୀନ ଅଟେ । ତେଣୁ ଏହି ଉପାଦାନହୀନ ଆଦି ପ୍ରବର୍ତ୍ତକ କୌଣସି ପାର୍ଥିବ କାର୍ଯ୍ୟ କରିବା ଅସମ୍ଭବ । ଅତଏବ ଚିନ୍ତା ହିଁ କେବଳ ଏହି ଆଦି ପ୍ରବର୍ତ୍ତକଙ୍କର ଏକ ମୁଖ୍ୟ କାର୍ଯ୍ୟ । ସେଥିପାଇଁ ଆରିଷ୍ଟଟଲଙ୍କ ମତରେ ଈଶ୍ୱର ଜଗତର ସ୍ରଷ୍ଟା ନୁହନ୍ତି । କାରଣ ସୃଷ୍ଟି ରୂପ କାର୍ଯ୍ୟ ଏହି ଆଦି କାରଣ ପକ୍ଷରେ ଅସମ୍ଭବ । ଏହି ଆଦି କାରଣ କେବଳ ସ୍ୱ ଚିନ୍ତାରେ ବ୍ୟାପକ । କୌଣସି ବିଷୟ ସମ୍ବନ୍ଧୀୟ ଚିନ୍ତା କରିବାଭଳି କୌଣସି ଉପାଦାନ ଏହି ଆଦି କାରଣ ବା ଈଶ୍ୱରଙ୍କ ପାଖରେ ନାହିଁ । ଈଶ୍ୱର ଉପାଦାନହୀନ ପରିପୂର୍ଣ୍ଣ ଆକାର ଓ ସ୍ୱଚିନ୍ତାରେ ବ୍ୟାପକ । ଆରିଷ୍ଟଟଲ ଏହି ଚିନ୍ତାକୁ (Though of thoughts) ଆଖ୍ୟା ଦେଇଛନ୍ତି । ପରିପୂର୍ଣ୍ଣ ଆକାର ଯୋଗୁ ଈଶ୍ୱର ଶୁଦ୍ଧ ଜ୍ଞାନ ଅଟନ୍ତି । ଅତଏବ ଆରିଷ୍ଟଟଲଙ୍କ ମତରେ ଚିନ୍ତାହିଁ ଶୁଦ୍ଧ ଜ୍ଞାନ ଅର୍ଥାତ୍ ଈଶ୍ୱର ।

ଆରିଷ୍ଟଟଲ ଈଶ୍ୱରଙ୍କୁ ଯେପରି ସୃଷ୍ଟିକର୍ତ୍ତା ବୋଲି କହୁନାହାନ୍ତି ସେପରି ଈଶ୍ୱରଙ୍କ ବିଧାନ ବୋଲି କିଛି ମାନନାହାନ୍ତି ।(Aristotle has not theory of Divine Creation or Divine Providence)

Ross, *Aristotle*, Page 184

ବର୍ତ୍ତମାନ ପ୍ରଶ୍ନ ଆସି ପାରେ ଯେ ଆରିଷ୍ଟଟଲଙ୍କ ସ୍ୱୀକୃତ ଈଶ୍ୱର ମାନବଙ୍କ ଗୁଣର ସମଷ୍ଟି କି ? ଏହି ପ୍ରସଙ୍ଗରେ ଏତିକି ବୁଝାଯାଇପାରେ ଯେ ଆରିଷ୍ଟଟଲଙ୍କ ସ୍ୱୀକୃତ ଈଶ୍ୱର ଅଚଞ୍ଚଳ, ଆଦ୍ୟ ପ୍ରବର୍ତ୍ତକ । ଏହି ଈଶ୍ୱର ବିଶ୍ୱର ଉପାଦାନ ଏପରି କୌଣସି ଇଙ୍ଗିତ ଆରିଷ୍ଟଟଲ ଦେଇ ନାହାନ୍ତି । ଏହି ଈଶ୍ୱର ଆତ୍ମକେନ୍ଦ୍ରିକ ଓ ଆତ୍ମଚିନ୍ତକ । ଏହାଙ୍କ ସହିତ ମନୁଷ୍ୟ ସମାଜର କୌଣସି ଅନ୍ତରଙ୍ଗ ସମ୍ପର୍କ ନାହିଁ । **ମ୍ୟାଗନାମରେଲିଆ** ଗ୍ରନ୍ଥରେ ଆରିଷ୍ଟଟଲ ସ୍ପଷ୍ଟ ଭାବେ କହିଛନ୍ତି ଯେ ଯେଉଁମାନେ ମନେକରନ୍ତି ଈଶ୍ୱରଙ୍କ ସହିତ ବନ୍ଧୁତା ସ୍ଥାପନ କରାଯାଏ ସେମାନେ ଭ୍ରାନ୍ତ, କାରଣ ଆମ୍ଭମାନେ ଯେପରି ଈଶ୍ୱରଙ୍କୁ ଭଲ ପାଇବାକୁ ଚେଷ୍ଟା କରିପାରୁଥିବାରୁ ଭଲପାଇ ପାରୁନା ସେହିପରି ଈଶ୍ୱର ଆମକୁ ମଧ୍ୟ ଭଲପାଇ ପାରନ୍ତି ନାହିଁ ।

**ମେଟାଫିଜିକ୍ସ** ଗ୍ରନ୍ଥ ଲେଖିବା ପୂର୍ବରୁ ଆରିଷ୍ଟଟଲ ପ୍ଲେଟୋଙ୍କ ଶିକ୍ଷାଧାରା ପ୍ରଭାବରେ ତାଙ୍କର କୌଣସି କୌଣସି ଲେଖାରେ ଈଶ୍ୱରଙ୍କ ଅସ୍ତିତ୍ୱ ସମ୍ବନ୍ଧରେ ଲେଖିଛନ୍ତି ଯେ ଯେତେବେଳେ ମନୁଷ୍ୟ ପୃଥିବୀର ଜଳଭାଗ, ସ୍ଥଳଭାଗ ଓ ଆକାଶର ମହିମା ଉପଲବ୍ଧି କରେ ସେତେବେଳେ ଏହି ବିଶ୍ୱର ସୌନ୍ଦର୍ଯ୍ୟ କେବଳ ଈଶ୍ୱର ସୃଷ୍ଟି ବୋଲି ମନେ ହୋଇଥାଏ ଏବଂ ଅନ୍ୟ ଏକ ପ୍ରମାଣ ଦେଇ ଆରିଷ୍ଟଟଲ ଈଶ୍ୱରଙ୍କ ଅସ୍ତିତ୍ୱ ସମ୍ବନ୍ଧରେ ଲେଖିଛନ୍ତି ଯେ ଯେଉଁଠାରେ ଶ୍ରେଷ୍ଠ ବୋଲି କିଛି ଅଛି ସେଠାରେ ଶ୍ରେଷ୍ଠ ବୋଲି ମଧ୍ୟ କିଛି ଅଛି । ଜାଗତିକ ବସ୍ତୁଗୁଡ଼ିକ ମଧ୍ୟରେ ଏକଠାରୁ ଅନ୍ୟଟି ଶ୍ରେଷ୍ଠ ବୋଲି ଧାରେଣତ ହୋଇଥାଏ, ତେଣୁ ଶ୍ରେଷ୍ଠ ବୋଲି ଯାହା ଅଛି ତାହା ହିଁ ଈଶ୍ୱର । [ଏହି ଜାତୀୟ ଏକ ପ୍ରମାଣ ଭାରତୀୟ ଯୋଗ ଦର୍ଶନରେ ମିଳେ । ଯୋଗ ଦାର୍ଶନିକଙ୍କ ମତରେ ମନୁଷ୍ୟ ଭିତରେ ଥିଲେ ଜ୍ଞାନ ମାତ୍ରା ଓ ଅଳ୍ପ ମାତ୍ରା ଥିବା ସ୍ୱାଭାବିକ । ଜ୍ଞାନ ଓ ଶକ୍ତି ମାତ୍ରାଭେଦ ଅଛି । ଅତଏବ ପୂର୍ଣ୍ଣତ୍ୱ ଥିବା ସ୍ୱାଭାବିକ । କୌଣସି ମନୁଷ୍ୟ ପକ୍ଷରେ ଏହି ପୂର୍ଣ୍ଣ ଜ୍ଞାନ ବା ଶକ୍ତି ରହିବା ଅସମ୍ଭବ । କାରଣ ମନୁଷ୍ୟ ଅପୂର୍ଣ୍ଣ । ଅତଏବ ପୂର୍ଣ୍ଣ ଜ୍ଞାନ ଏବଂ ପୂର୍ଣ୍ଣ ଶକ୍ତିର ଅଧିକାରୀ ରୂପେ ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକାର୍ଯ୍ୟ ]

ଆରିଷ୍ଟଟଲ ଯେଉଁ ଶ୍ରେଷ୍ଠତ୍ୱ କଥା ଉଲ୍ଲେଖ କରିଛନ୍ତି । ତାହା ସାପେକ୍ଷ ଶ୍ରେଷ୍ଠ ଏହା ନିରପେକ୍ଷ ଶ୍ରେଷ୍ଠ ବା ପୂର୍ଣ୍ଣ ଶ୍ରେଷ୍ଠ ନୁହେଁ । ନିରପେକ୍ଷ ଶ୍ରେଷ୍ଠ ସମ୍ବନ୍ଧରେ କହିବାକୁ ଗଲେ ସମସ୍ତ ସୀମିତ ବା ସାପେକ୍ଷ ଶ୍ରେଷ୍ଠତାର ଉତ୍ସ ରୂପେ ପରିପୂର୍ଣ୍ଣ ଶ୍ରେଷ୍ଠକୁ ହିଁ ମାନିବା ଯୁକ୍ତିସଙ୍ଗତ ।

ମେଟାଫିଜିକସ ଗ୍ରନ୍ଥରେ ଆରିଷ୍ଟଟଲ୍ ଯେଉଁ ଈଶ୍ୱରଙ୍କ କଳ୍ପନା କରିଛନ୍ତି ସେହି ଈଶ୍ୱର ମନୁଷ୍ୟର ସୁଖ, ଦୁଃଖ ପ୍ରତି ଉଦାସୀନ ଏବଂ ଜଗତ ସମ୍ବନ୍ଧରେ ଆଜ୍ଞ । ଅତଏବ ଏହି ଈଶ୍ୱର ମନୁଷ୍ୟର ଧର୍ମ ସମ୍ବନ୍ଧୀୟ ଅନୁଭୂତ ପରିତୃପ୍ତି କରି ପାରିବ ନାହିଁ । ଏହି ବିଶ୍ୱ ମଧ୍ୟରେ ଈଶ୍ୱର ତାଙ୍କର ଉଦ୍ଦେଶ୍ୟ ଚରିତାର୍ଥ କରି ଚାଲିଛନ୍ତି ଏପରି କୌଣସି କଥା ଆରିଷ୍ଟଟଲଙ୍କ ବିଶ୍ୱାସଯୋଗ୍ୟ ନୁହେଁ । ତାଙ୍କ ମତରେ ଈଶ୍ୱର ବିଶୁଦ୍ଧ ଆକାର ବୋଲି ଚରମ ବ୍ୟକ୍ତି ବା ଶକ୍ୟ ଏବଂ ବିଶ୍ୱ ଅସଚେତନ ଭାବରେ ଏହି ଆକାର ପ୍ରାପ୍ତି ନିମନ୍ତେ ନିରନ୍ତର ଅଗ୍ରସର ହୋଇ ଚାଲିଛି । ଏହି 'ଉଦ୍ଦେଶ୍ୟବାଦ'କୁ ଆରିଷ୍ଟଟଲଙ୍କ ଅସଚେତନ ଉଦ୍ଦେଶ୍ୟବାଦ ବା Unconscious teleology କୁହାଯାଏ ।

## ଦେହ ଓ ଆତ୍ମା

**ଡ଼ି ଆନିମା** ଗ୍ରନ୍ଥରେ ଆରିଷ୍ଟଟଲ ଆତ୍ମା ସମ୍ବନ୍ଧରେ ତାଙ୍କ ମତ ବ୍ୟକ୍ତ କରିଛନ୍ତି । ତାଙ୍କ ମତରେ ଆତ୍ମା ଦେହଠାରୁ ସ୍ୱତନ୍ତ୍ର କୌଣସି ବସ୍ତୁ ନୁହେଁ ଆତ୍ମା ଦେହର ଐକ୍ୟ ବିଧାୟକ ଆକାର ଅଟେ । ଆତ୍ମା ଯୋଗୁଁ ହିଁ ଦେହ ମଧ୍ୟରେ ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗର ଏକ ଅନ୍ତସ୍ୟୂତ ଐକ୍ୟ ଲକ୍ଷ୍ୟ କରାଯାଏ । ଆରିଷ୍ଟଟଲ ଆତ୍ମାକୁ ଦେହର ଆକାର ବୋଲି ଉଲ୍ଲେଖ କରିଛନ୍ତି । ତାଙ୍କ ମତରେ ଉପାଦାନ ସହିତ ଆକାରର ଯେଉଁ ସମ୍ବନ୍ଧ ଦେହ ସହିତ 'ଆତ୍ମା'ର ସେହି ସମ୍ବନ୍ଧ ଅଟେ । ଆତ୍ମା ହିଁ ଦେହର ଉଦ୍ଦେଶ୍ୟ କାରଣ ଅଟେ । ଅର୍ଥାତ୍ ଆତ୍ମା ଯୋଗୁ ହିଁ ଦେହର ଅସ୍ତିତ୍ୱ । ଆତ୍ମା ଦ୍ରବ୍ୟ ଏବଂ ଦେହରୂପ ଅବ୍ୟକ୍ତ ସମ୍ବନ୍ଧରେ ବ୍ୟକ୍ତ । ଆରିଷ୍ଟଟଲ ଆତ୍ମାର ଅବିନଶ୍ୱରତା ମାନି ନ । **ଅନ୍ ଦି ସୋଲ୍** ଗ୍ରନ୍ଥରେ ସେ କହିଛନ୍ତି ଆତ୍ମା ଦେହ ସହିତ ସଂଯୁକ୍ତ ଅତଏବ ପାଇଥୋଗୋରସ୍ଙ୍କ ଜନ୍ମାନ୍ତରବାଦ ହାସ୍ୟାସ୍ପଦ । ଏହି ଉକ୍ତିରୁ ହିଁ ଜଣାଯାଏ ଆରିଷ୍ଟଟଲ 'ଆତ୍ମା ଅବିନଶ୍ୱର' ଏ କଥା ମାନି ନାହାନ୍ତି । ତାଙ୍କ ମତରେ ଦେହ ସହିତ ଆତ୍ମାର ମଧ୍ୟ ବିନାଶ ହୁଏ ।

ପୁନଶ୍ଚ ଆରିଷ୍ଟଟଲ ଆତ୍ମା ଓ ମନ ମଧ୍ୟରେ ପାର୍ଥକ୍ୟ ଉଲ୍ଲେଖ କରିଛନ୍ତି । ତାଙ୍କ ମତରେ ମନ ଆତ୍ମା ଅପେକ୍ଷା ଉଚ୍ଚତର । ଏହି ମନ ଦେହ ସହିତ ଅପେକ୍ଷାକୃତ କମ ଯୁକ୍ତ । ମନ ଆତ୍ମା ନିହିତ ଏକ ସ୍ୱତନ୍ତ୍ର ଦ୍ରବ୍ୟ ଏବଂ ଏହାର ଧ୍ୱଂସ ଅସମ୍ଭବ । ମନ ଆତ୍ମାର ଅନ୍ତର୍ନିହିତ ଦ୍ରବ୍ୟ ହେଲେ ମଧ୍ୟ ଆତ୍ମାର ଅନ୍ୟାନ୍ୟ ଶକ୍ତିଠାରୁ ସ୍ୱତନ୍ତ୍ର ଭାବେ ତିଷ୍ଠି ରହିବାର କ୍ଷମତା କେବଳ ମନର ଅଛି । ମନର ବିଷୟ କାଳାତୀତ ଅତଏବ ମନ କାଳାତୀତ ଅଟେ ।

ଆତ୍ମା ଶରୀର ପରିଚାଳନା କରେ ଏବଂ ଇନ୍ଦ୍ରିୟଗ୍ରାହ୍ୟ ବିଷୟ ପ୍ରତ୍ୟକ୍ଷ କରେ । ଆତ୍ମପୁଷ୍ଟି, ସମ୍ବେଦନ, ଅନୁଭୂତ ଏବଂ ଉଦ୍ଦେଶ୍ୟାନୁଗତ୍ୟ ଆତ୍ମାର ଧର୍ମ ଅଟେ । କିନ୍ତୁ ମନର ଏକମାତ୍ର କାର୍ଯ୍ୟ ଚିନ୍ତା । ଚିନ୍ତା ସହିତ ଦେହ ବା ଇନ୍ଦ୍ରିୟର କୌଣସି ସମ୍ବନ୍ଧ ନାହିଁ । ସୁତରାଂ ମନ ଅବିନଶ୍ୱର ।

**ନିକୋମ୍ୟାକିୟାନ ଏଥିକ୍ସ** ଗ୍ରନ୍ଥରେ ଆରିଷ୍ଟଟଲ ଆତ୍ମାର ଦୁଇଟି ଦିଗ ସମ୍ବନ୍ଧରେ କହିଛନ୍ତି — (୧) ଯୁକ୍ତ ଦିଗ, (୨) ଅଯୁକ୍ତ ଦିଗ । ତାଙ୍କ ମତରେ ଏକ ବ୍ୟକ୍ତି ସହିତ ଅନ୍ୟ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ କେବଳ ଦେହ ଓ ଆତ୍ମାର ଅଯୁକ୍ତିକ ଦିଗ ନିମିତ୍ତ ହୋଇଥାଏ । ଅଯୁକ୍ତି ହିଁ ଏକ ଠାରୁ ଅନ୍ୟକୁ ପୃଥକ କରିଥାଏ । ଯୁକ୍ତି ହିଁ ଐକ୍ୟ ଆଣିଥାଏ । ସୁତରାଂ ମନର ବା ଆତ୍ମାର ଯୁକ୍ତି ଦିଗର ଅବିନଶ୍ୱରତା ଭିନ୍ନ ଭିନ୍ନ ମନୁଷ୍ୟର ବ୍ୟକ୍ତିଗତ ଅବିନଶ୍ୱରତା ନୁହେଁ । ଖ୍ରୀଷ୍ଟଧର୍ମର ଏବଂ ପ୍ଲେଟୋଙ୍କର ବ୍ୟକ୍ତିଗତ ଅବିନଶ୍ୱରତାକୁ ଆରିଷ୍ଟଟଲ ମାନି ନାହାନ୍ତି । ମନୁଷ୍ୟ ଯେତେ ଯୁକ୍ତି ଅଧୀନ ସେ ସେତେ ଦିବ୍ୟ ସ୍ୱଭାବର ଅଧିକାରୀ ବୋଲି ଆରିଷ୍ଟଟଲଙ୍କ ମତ ଏବଂ ମନୁଷ୍ୟର ଏହି ଦିବ୍ୟ ସ୍ୱଭାବ ହିଁ ଅବିନଶ୍ୱର । ମନୁଷ୍ୟ ତା'ର ଦିବ୍ୟ ସ୍ୱଭାବକୁ ବିକଶିତ କରିବା ସଙ୍ଗେ ସଙ୍ଗେ ବ୍ୟକ୍ତିର ସୀମା ଅତିକ୍ରମ କରି ଭୂମି ସ୍ତରକୁ ଉନ୍ନୀତ ହୁଏ । ଭୂମାହିଁ ଅମୃତତ୍ତ୍ୱ ।



# ପଞ୍ଚମ ଅଧ୍ୟାୟ

## ପ୍ରାକୃତିକ ଦର୍ଶନ ଓ ମନୋବିଜ୍ଞାନ

ଆଜିକାଲି ଯାହାକୁ ପ୍ରାକୃତିକ 'ବିଜ୍ଞାନ' କୁହାଯାଉଛି ସେହି ବିଜ୍ଞାନ ଆରିଷ୍ଟଟଲଙ୍କ ସମୟରେ ଦର୍ଶନ-ଶାସ୍ତ୍ର ଅନ୍ତର୍ଗତ ଥିଲା । ଆରିଷ୍ଟଟଲ ଆଧୁନିକ ଯୁଗର ପ୍ରାକୃତିକ ବିଜ୍ଞାନ ଓ ତତ୍କାଳୀନ ପ୍ରାକୃତିକ ଦର୍ଶନ ସମ୍ବନ୍ଧରେ ବିଶେଷ ଆଲୋଚନା କରିଛନ୍ତି ।

ଜଡ ଓ ଗତିର ଅଧୀନ ବସ୍ତୁଗୁଡ଼ିକର ସମଷ୍ଟିକୁ ହିଁ ପ୍ରକୃତି କୁହାଯାଏ । ବସ୍ତୁ ପ୍ରାକୃତିକ ବସ୍ତୁ ମୂଳତଃ ଆରିଷ୍ଟଟଲଙ୍କ ମତରେ ସେହି ବସ୍ତୁ ଅଟେ ଯାହାର ପରିବର୍ତ୍ତନ ସମ୍ଭାବନା ଯୋଗୁଁହିଁ ଉପାଦାନ ଆକାରରେ ରୂପାନ୍ତରିତ ହୋଇଥାଏ । ଉପାଦାନ କିପରି କ୍ରମଶଃ ନିମ୍ନତର ଆକାରରୁ ଉଚ୍ଚତର ଆକାରରେ ପରିପ୍ରକାଶ ଲାଭ କରିଥାଏ, ସେହି ବିଷୟ ଆରିଷ୍ଟଟଲ ଆଲୋଚନା କରିଛନ୍ତି ।

ଆରିଷ୍ଟଟଲଙ୍କ ମତରେ ଯଦିଓ ପ୍ରାକୃତିକ ବସ୍ତୁଗୁଡ଼ିକରେ ପରିବର୍ତ୍ତନ ସମ୍ଭାବନା ବା ଶକ୍ତି ବିଦ୍ୟମାନ ତଥାପି ଏହି ସମ୍ଭାବନାର ରୂପାୟନ ବା ବ୍ୟକ୍ତିତା ଏକ ବାହ୍ୟ ନିମିତ୍ତ କାରଣର କ୍ରିୟା ଉପରେ ନିର୍ଭରଶୀଳ । ପୁନଶ୍ଚ ପ୍ରକୃତିର ମୂଳ ଲକ୍ଷ୍ୟ ମନୁଷ୍ୟ ସୃଷ୍ଟି । ଏହି ସୃଷ୍ଟି ନିମନ୍ତେ ପ୍ରାକୃତିକ କ୍ରିୟା ପରିଚାଳିତ ହୋଇଚାଲିଛି । କିନ୍ତୁ ଏହି ଲକ୍ଷ୍ୟରେ ଉପନୀତ ହେବାର ଗତିପଥରେ ପ୍ରକୃତି ମଧ୍ୟରେ ନିଃଷ୍ପ୍ରାଣ ବସ୍ତୁ, ଉଦ୍ଭିଦ ମନୁଷ୍ୟେତର ପ୍ରାଣୀ ପ୍ରଭୃତିର ସୃଷ୍ଟି ହୋଇଅଛି । ଆରିଷ୍ଟଟଲଙ୍କ ମତରେ ମନୁଷ୍ୟ ସୃଷ୍ଟି ଅର୍ଥ ପୁରୁଷ ସୃଷ୍ଟି କାରଣ ନାରୀ ସୃଷ୍ଟି ପ୍ରକୃତିର ଲକ୍ଷ୍ୟ ନୁହେଁ । ସୃଷ୍ଟି ପ୍ରକ୍ରିୟାରେ ପୁରୁଷ ବ୍ୟତୀତ ଯାହା ଯାହା ସୃଷ୍ଟି ହୋଇଛି ତାହା ପ୍ରକୃତିର ଉପଲକ୍ଷ୍ୟ ଅଟେ ।

ଏହା ପ୍ରାକୃତିକ ଗତିକୁ ଦ୍ୱିବିଧ ଅର୍ଥରେ ଗ୍ରହଣ କରାଯାଇ ପାରେ । (୧) ବ୍ୟାପକ ଅର୍ଥ, (୨) ସଂକୀର୍ଣ୍ଣ ଅର୍ଥ । ବ୍ୟାପକ ଅର୍ଥରେ ପ୍ରାକୃତିକ ଗତିର ଅର୍ଥ ଆଗମନ ଏବଂ ନିଷ୍କ୍ରମଣ । ସଙ୍କୀର୍ଣ୍ଣ ଅର୍ଥରେ ଗତିରେ ଗୁଣଗତ ଗତି, ପରିମାଣ ଗତି ଏବଂ ସ୍ଥାନୀୟ ଗତି ବୁଝାଯାଏ । ସାଧାରଣତଃ ବ୍ୟବହାରିକ ଅର୍ଥରେ ଗତିକୁ ସ୍ଥାନୀୟ ଗତି ବୋଲି କୁହାଯାଏ ।

ଗତି କେବେହେଲେ ଦିକ୍ ଏବଂ କାଳ ଭିନ୍ନ ସମ୍ଭବ ନୁହେଁ । ଦିକ୍ ଅଛିବୋଲି ବସ୍ତୁର ସ୍ଥାନାନ୍ତର ସମ୍ଭବ ହେଉଛି । ଏହି ଦିକ୍ ଅଛିବୋଲି ଆମ୍ଭେମାନେ କ୍ଷିତି, ଅପ୍, ତେଜ, ମରୁତ ଏହି ଚତୁର୍ଭୂତର ଅସ୍ତିତ୍ୱ ଉପଲବ୍ଧି କରିପାରୁଛୁ ।

ବସ୍ତୁ ଯେଉଁ ସୀମା ଦ୍ୱାରା ସୀମିତ ହୋଇଥାଏ । ଏହି ସୀମା ଦ୍ୱାରା ସୀମିତ ହୋଇ ରହିଥିବା ବସ୍ତୁର ଅସ୍ତିତ୍ୱକୁ ଦିକ୍ ବୁଝାଯାଏ । ଏହି ସୀମା ସ୍ଥିର, ସେଥିପାଇଁ ଦିକ୍ ମଧ୍ୟ ସ୍ଥିର । ଏହି ଭାବରେ ଯଦି 'ଦିକ୍'କୁ ବ୍ୟାଖ୍ୟା କରାଯାଏ ତେବେ ଶୂନ୍ୟ ଦିକ୍ ବା ବିଶ୍ୱ ବହିର୍ଭୂତ ଦିକ୍ ବୋଲି କିଛି କଳ୍ପନା ଅସମ୍ଭବ । କାରଣ ଦିକ୍ ବସ୍ତୁର ସୀମା ଅଟେ । ଯେଉଁଠାରେ ବସ୍ତୁ ନାହିଁ, ସେଠାରେ ଦିକ୍ ମଧ୍ୟ ନାହିଁ । ବିଶ୍ୱରେ ଯାହା ଅଛି ସମସ୍ତ ଦିକ୍ ମଧ୍ୟରେ ଅଛି; କିନ୍ତୁ ବିଶ୍ୱ ସ୍ୱୟଂ ଦିକ୍ ମଧ୍ୟରେ ନାହିଁ । ଯେହେତୁ ଗତିର ଅର୍ଥ ସ୍ଥାନାନ୍ତର ଏବଂ ସ୍ଥାନାନ୍ତର କେବଳ ଦିକ୍‌ରେ ହିଁ ସମ୍ଭବ, ଅତଏବ ବିଶ୍ୱର କୌଣସି ବହିର୍ଗତି ନାହିଁ । ବିଶ୍ୱ ମଧ୍ୟସ୍ଥିତ ବିଭିନ୍ନ ବସ୍ତୁର ବିଭିନ୍ନ ଗତି ଥିବା ସ୍ଥଳେ ବିଶ୍ୱର ବହିର୍ଗତି ଅସମ୍ଭବ ।

ଆରିଷ୍ଟଟଲଙ୍କ ମତରେ କାଳ ଗତି ବା ପରିବର୍ତ୍ତନ ସଙ୍ଗେ ଅଭିନ୍ନ । ଏ କଥାର କୌଣସି ସଙ୍ଗତ କାରଣ ନ ଥିବାର ଜଣାଯାଏ । ଗତି ବିଚ୍ଛିନ୍ନ ପ୍ରକାରର ହେବା ସ୍ଥଳେ କାଳ ଏକ ଅଟେ । ଏହା ଅନେକ ନୁହେଁ ଏବଂ କାଳ ବିଚ୍ଛିନ୍ନ ମୁହୂର୍ତ୍ତର ସମଷ୍ଟି ମାତ୍ର ନ ହୋଇ ଅବିଚ୍ଛିନ୍ନ ଅଟେ । ଯାହା ନିତ୍ୟ ଏବଂ ସମ୍ପୂର୍ଣ୍ଣ ସ୍ଥିର ତାହା କାଳ ଅନ୍ତର୍ଗତ ନୁହେଁ । ଅନିତ୍ୟ ବସ୍ତୁ, ପରିବର୍ତ୍ତନଶୀଳ ବସ୍ତୁ ହିଁ କାଳ ଅନ୍ତର୍ଗତ । ଗତି ନିତ୍ୟ କିନ୍ତୁ ସ୍ଥିର ନୁହେଁ, ଅତଏବ ଗତି କାଳ ଅନ୍ତର୍ଗତ । କାଳ ନିତ୍ୟ ଅଟେ, କାରଣ କାଳର ଆରମ୍ଭ ନାହିଁ କି ଶେଷ ମଧ୍ୟ ନାହିଁ ।

ଯେଉଁ ଗତି ବା ପରିବର୍ତ୍ତନ କାଳ ଅନ୍ତର୍ଗତ ତା କେବଳ ସ୍ଥାନୀୟ ଗତି ନୁହେଁ । ମାନସିକ ଅବସ୍ଥାର ଗତି ମଧ୍ୟ କାଳ ଅନ୍ତର୍ଗତ ଅଟେ । ଅର୍ଥାତ କାଳର ପରିବର୍ତ୍ତନର ବିଭିନ୍ନ ଅବସ୍ଥା ମାନସିକ ଚିନ୍ତା ଦ୍ୱାରାହିଁ ପରିଚ୍ଛିନ୍ନ । ଏହି ବିଭିନ୍ନ ଅବସ୍ଥାର ଗଣନାକୁ ହିଁ କାଳ-ଗଣନା ବୁଝାଯାଏ ।

କାଳର ପରିମାପ ସମ୍ବନ୍ଧରେ ଆରିଷ୍ଟଟଲ କହିଛନ୍ତି ଯେ ଅନ୍ୟ କୌଣସି ଭିତ୍ତି ଦ୍ୱାରା କାଳର ପରିମାପ ଅସମ୍ଭବ । ଗତି ସ୍ୱାଭାବିକ ଏବଂ ସର୍ବଦା ଏକ ରୂପ ହୋଇଥିବାରୁ ଗତି ହିଁ କାଳର ପରିମାପିକା । ବୃତ୍ତାକାର ଗତି ସ୍ୱାଭାବିକ ଭାବେ ସର୍ବଦା ଏକରୂପ ଅଟେ । ଆକାଶର ଗ୍ରହ, ନକ୍ଷତ୍ର ଆଦିର ଗତି ସ୍ୱାଭାବିକ ଗତି । ସେଥିପାଇଁ ସୂର୍ଯ୍ୟଙ୍କ ଗତିର ଭିତ୍ତିରେ କାଳର ପରିମାପ ଯଥାର୍ଥ ଅଟେ ।

ଆରିଷ୍ଟଟଲଙ୍କ ମତାନୁସାରେ କାଳ ଅବିଚ୍ଛିନ୍ନ ହୋଇଥିବାରୁ କାଳର ବିଭିନ୍ନ ଅବସ୍ଥାର ଚିନ୍ତା ଶକ୍ତ ବା ଅବ୍ୟକ୍ତ, ଏହା ବ୍ୟକ୍ତ ନୁହେଁ । ମନ ଦ୍ୱାରା ହିଁ କାଳର ଏହି ବିଭିନ୍ନ ଅଂଶର ଧାରଣା କାଳ ଗଣନାର ଭିତ୍ତିରେ ନିର୍ଣ୍ଣୟ କରାଗଲେହେଁ ସେମାନଙ୍କର

ଅବ୍ୟକ୍ତ ଅବସ୍ଥା ମନ ଉପରେ ନିର୍ଭର କରେ ନାହିଁ । ମୂଳତଃ ଅବିଚ୍ଛିନ୍ନ କାଳ ଓ କାଳର ବିଭିନ୍ନ ଅଂଶର ଅବ୍ୟକ୍ତତା ମନ ନିର୍ଭରଶୀଳ ନୁହେଁ । ଆଇନଷ୍ଟାଇନଙ୍କ କାଳ ସମ୍ବନ୍ଧୀୟ ଏହି ମତବାଦ, ଦାର୍ଶନିକ କାଣ୍ଟଙ୍କ ମତବାଦ ଅନୁରୂପ ନୁହେଁ ।

ଆଇନଷ୍ଟାଇନଙ୍କ ଅସୀମର ସମ୍ଭାବନା ସମ୍ବନ୍ଧରେ ବିଭିନ୍ନ ସୂତ୍ର ନିମ୍ନରେ ଦିଆଗଲା—

(କ) ଅସୀମ ଦେହ ବା ବସ୍ତୁ ସମ୍ଭବ ନୁହେଁ । କାରଣ ପ୍ରତ୍ୟେକ ବସ୍ତୁ ବା ଦେହ ବା ଆକାର ଏକ୍ ମଧ୍ୟରେ ହିଁ ସୀମିତ । ଦେହ ବା ବସ୍ତୁ ସମ୍ବନ୍ଧୀୟ ଅବସ୍ଥାନର ଧାରଣା ସହିତ, ଉପର, ତଳ, ପୂର୍ବ, ପଶ୍ଚିମ, ପ୍ରଭୃତି, ଏକ୍ ଗତ ଧାରଣା ସ୍ଥାନିକ । କିନ୍ତୁ ଅସୀମ ଦେହ ବା ବସ୍ତୁ ଏହି ଜାତୀୟ ଅବସ୍ଥାନ ଅନ୍ତର୍ଗତ ନୁହେଁ, ସୁତରାଂ ଅସୀମରେ ଦେହ ବା ବସ୍ତୁର ଅସ୍ତିତ୍ୱ ଅସମ୍ଭବ । ପୁନଶ୍ଚ ସଂଖ୍ୟା ସମ୍ବନ୍ଧରେ ସେ କହିଛନ୍ତି ଯେ ଅସୀମ ସଂଖ୍ୟା ଅସମ୍ଭବ । କାରଣ ସଂଖ୍ୟା ଗଣନାର ଅନ୍ତର୍ଗତ କିନ୍ତୁ ଅସୀମ ସଂଖ୍ୟା ଗଣନା ଅନ୍ତର୍ଗତ ନୁହେଁ ।

(ଖ) ଯଦିଓ ଆଇନଷ୍ଟାଇନ ଅସୀମ ଦେହ ବା ବସ୍ତୁ ଓ ଅସୀମ ସଂଖ୍ୟାର ବ୍ୟକ୍ତତା ବା ଅବସ୍ଥାନ ଅସ୍ୱୀକାର କରିଛନ୍ତି, କିନ୍ତୁ ଅନ୍ୟ ଅର୍ଥରେ ସେ ଅସୀମକୁ ସ୍ୱୀକାର କରିଛନ୍ତି । ତାଙ୍କ ମତରେ ଅସୀମ ଅବ୍ୟକ୍ତ ଅବସ୍ଥାରେ ସମ୍ଭବ । ଅର୍ଥାତ୍ ଅସୀମର ଅବ୍ୟକ୍ତତା ବା ଶକ୍ୟତା ଅଛି; ବାସ୍ତବତା ନଥିଲେ ହେଁ ସମ୍ଭାବନା ଅଛି । ଉଦାହରଣ ସ୍ୱରୂପ: କୌଣସି ଏକ୍ ବ୍ୟାପ୍ତି ବ୍ୟକ୍ତ ବା ବାସ୍ତବ ଅର୍ଥରେ ଅସୀମ ନୁହେଁ । କିନ୍ତୁ ସମ୍ଭାବନା ଅର୍ଥରେ ଅସୀମ ହୋଇପାରେ, କାରଣ ସେହି ବିସ୍ତୃତିକୁ ଅସୀମ ଭାବରେ ବିଭାଜନ କରାଯାଇ ପାରେ । ପୁନଶ୍ଚ ଏକ ସରଳରେଖା ବ୍ୟକ୍ତ ଅସୀମ ସଂଖ୍ୟକ ବିନ୍ଦୁ ସମଷ୍ଟି ନୁହେଁ, କାରଣ ଏହା ଅବିଚ୍ଛିନ୍ନ ଅଟେ, କିନ୍ତୁ ଏହି ରେଖାକୁ ଅସୀମ ଭାଗରେ ବିଭକ୍ତ କରିବାର ସମ୍ଭାବନା ଅଛି, ଯଦିଓ ଏହି ଅସୀମ ବିଭାଗ ବିସ୍ତୃତ କେବେହେଲେ ବାସ୍ତବରେ ସମ୍ଭବ ନୁହେଁ ।

ଆଇନଷ୍ଟାଇନଙ୍କ ମତରେ କାଳ ମଧ୍ୟ ଅବ୍ୟକ୍ତ ବା ଶକ୍ତ ରୂପୀ ଅସୀମ କାରଣ ଅନିର୍ଦ୍ଦିଷ୍ଟ ଭାବରେ ଏହାର ବିଭକ୍ତ ହେବାର ସମ୍ଭାବନା ଅଛି । କାଳର କେବେହେଲେ ବ୍ୟକ୍ତ ଓ ଅସୀମ ରୂପରେ ଅସ୍ତିତ୍ୱ ନାହିଁ । ଏହା ଅବିଚ୍ଛିନ୍ନ ଓ ଏହାର ବିଭକ୍ତ ଅଂଶ ଏହାଠାରୁ ଭିନ୍ନ ନୁହେଁ ।

ଏକ୍ ଓ କାଳ ଭଳି ସଂଖ୍ୟା ମଧ୍ୟ ଅବ୍ୟକ୍ତ ରୂପୀ ଅସୀମ । ଏହା ବ୍ୟକ୍ତ ରୂପରେ ଅସୀମ ନୁହେଁ । କାରଣ ସଂଖ୍ୟାକୁ ଅନିର୍ଦ୍ଦିଷ୍ଟ ଭାବରେ

ବଢ଼ାଇ ଅବ୍ୟକ୍ତ ରୂପେ ଅସୀମ କରାଯାଇ ପାରେ । କିନ୍ତୁ ଗଣନା ସମ୍ଭବ ନ ହେବା ସଂଖ୍ୟାକୁ ଭଣି ହୁଏ ନାହିଁ । ତେଣୁ ସଂଖ୍ୟା ବ୍ୟକ୍ତ ରୂପେ ଅସୀମ ନୁହେଁ । କିନ୍ତୁ ଦିକ୍, କାଳ ସହିତ ସଂଖ୍ୟାର ଏକ ପାର୍ଥକ୍ୟ ଲକ୍ଷ୍ୟ କରାଯାଏ । ଦିକ୍ ଓ କାଳକୁ ଅସୀମ ଅଂଶରେ ଭାଗ କରାଯାଇପାରେ । କିନ୍ତୁ ସଂଖ୍ୟାକୁ ଅସୀମ ଅଂଶରେ ଭାଗ କରି ହେବ ନାହିଁ । କାରଣ ଏହାର ଏକ ନିମ୍ନତର ଏକକ ଅଛି, ଯାହା କି ଅବିଭାଜ୍ୟ ଅଟେ ।

ଆରିଷ୍ଟଟଲଙ୍କ ମତରେ ସବୁ ପ୍ରାକୃତିକ ଗତି ଉଦ୍ଦେଶ୍ୟମୂଳକ ଅଟେ । ଅବ୍ୟକ୍ତ ଅବସ୍ଥାଠାରୁ ବ୍ୟକ୍ତ ଅବସ୍ଥା ପ୍ରାପ୍ତ ଓ ଉପାଦାନରୁ ଆକାରଗତ ରୂପାୟନ ଏହି ଗତିର ଉଦ୍ଦେଶ୍ୟ ଅଟେ । ପ୍ଲେଟୋଙ୍କ ପରି ଆରିଷ୍ଟଟଲ ଜନ୍ତ୍ରୀ ଦ୍ୱାରା ପ୍ରକୃତିର ଯାନ୍ତ୍ରିକତା ଅପେକ୍ଷା ଉଦ୍ଦେଶ୍ୟମୂଳକତା ପ୍ରତି ଅଧିକ ଗୁରୁତ୍ୱ ଦେଇଛନ୍ତି । ଆରିଷ୍ଟଟଲଙ୍କ ଏହି ଉଦ୍ଦେଶ୍ୟମୂଳକତା ଅସଚେତନ ଅଟେ । ଏହା ସଚେତନ ନୁହେଁ । ଏ ପ୍ରସଙ୍ଗରେ ଆରିଷ୍ଟଟଲଙ୍କ ଅଧିବିଦ୍ୟା ଅଧ୍ୟାୟରେ ପୂର୍ବରୁ ଆଲୋଚନା କରାଯାଇଅଛି ।

ଆରିଷ୍ଟଟଲ ବିଶ୍ୱକୁ ଦୁଇଟି ସ୍ୱତନ୍ତ୍ର ଲୋକରେ ଭାଗ କରିଛନ୍ତି । (୧) ଅତି ଚନ୍ଦ୍ରାଲୋକ, (୨) ଅଧଃ ଚନ୍ଦ୍ରାଲୋକ । ଅତି ଚନ୍ଦ୍ରାଲୋକରେ ନକ୍ଷତ୍ରମାନଙ୍କର ଅସ୍ତିତ୍ୱ ଅଛି । ନକ୍ଷତ୍ର ଅବିନଶ୍ୱର । ଏହି ନକ୍ଷତ୍ରମାନଙ୍କର ସ୍ଥାନୀୟ ଗତି ଭିନ୍ନ ଅନ୍ୟ କୌଣସି ଗତି ନାହିଁ । ନକ୍ଷତ୍ର ଗତି ବୃତ୍ତାକାର ଅଟେ । ଆରିଷ୍ଟଟଲଙ୍କ ମତରେ ନକ୍ଷତ୍ର ଉପାଦାନ ବ୍ୟୋମ । ବ୍ୟୋମ ଅନ୍ୟାନ୍ୟ ଚତୁର୍ଭୂତ ଯଥା :— କ୍ଷିତି, ଅପ୍, ତେଜ୍ ଓ ମରୁତ ଅପେକ୍ଷା ଶ୍ରେଷ୍ଠ ଅଟେ ।

ଆରିଷ୍ଟଟଲଙ୍କ ମତରେ ବିଶ୍ୱର କେନ୍ଦ୍ରସ୍ଥଳରେ ବର୍ତ୍ତୁଳାକାର ଜଗତ୍ ବିଦ୍ୟମାନ । ଏହି ଜଗତର ଚତୁର୍ଦ୍ଦିଗରେ ଏକ କେନ୍ଦ୍ର ବିଶିଷ୍ଟ ବର୍ତ୍ତୁଳାକାର ଅପ୍, ତେଜ୍, ମରୁତ ପ୍ରଭୃତିର ବିଭିନ୍ନ ସ୍ତର ଅଛି । ଏହି ସ୍ତର ଉପରେ ସ୍ୱର୍ଗଲୋକ ବିଦ୍ୟମାନ । ଏହି ସ୍ୱର୍ଗଲୋକର ଗତି ଆଦିପ୍ରବର୍ତ୍ତକଙ୍କ ଦ୍ୱାରା ନିୟନ୍ତ୍ରିତ । ସ୍ୱର୍ଗନିମ୍ନରେ ଗ୍ରହମଣ୍ଡଳର ଅବସ୍ଥାନ ଅଛି । ଏହି ମଣ୍ଡଳରେ ସୂର୍ଯ୍ୟ, ଚନ୍ଦ୍ର ଓ ଅନ୍ୟାନ୍ୟ ପାଞ୍ଚୋଟି ଗ୍ରହ ଅବସ୍ଥାନ କରୁଛନ୍ତି । ପ୍ରତ୍ୟେକ ଗ୍ରହ ଏକ ଏକ ସ୍ୱତନ୍ତ୍ର ପରିଚାଳକ ଦ୍ୱାରା ପରିଚାଳିତ ।

ଆରିଷ୍ଟଟଲଙ୍କ ମତରେ ପ୍ରକୃତି ତ୍ରିବିଧ ସତ୍ତାବିଶିଷ୍ଟ ଅଟେ । ପ୍ରଥମତଃ ଭୌତିକ ସତ୍ତା । ଏହି ସତ୍ତା ସ୍ୱୟଂ ପରିଚାଳିତ ଏବଂ ଏହି ସତ୍ତା ସମସ୍ତ ଗତିର ଉତ୍ସ ଅଟେ । ଏହି ତତ୍ତ୍ୱର ନାମ ଆରିଷ୍ଟଟଲ ଈଶ୍ୱର ଦେଇଛନ୍ତି । ଦ୍ୱିତୀୟ ତତ୍ତ୍ୱର ନାମ ସ୍ୱର୍ଗ ଅଟେ । ଏହା

ସ୍ୱୟଂ ସ୍ଥଳିତ ନୁହେଁ । ଏହା ବୃତ୍ତାକାର ପଥରେ ଘୂର୍ଣ୍ଣମାନ ଅବିନଶ୍ୱର ଏବଂ ଉପାଦାନ ସଂଶ୍ଳିଷ୍ଟ ଅଟେ । ଦୃଶ୍ୟ ସତ୍ତ୍ୱର ନାମ ଦ୍ୟୁଲୋକ । ଏହା ନଶ୍ୱର ସାମଗ୍ରିର ସମଷ୍ଟି ଅଟେ ।

ଏହି ପୃଥିବୀର ବିଭିନ୍ନ ବସ୍ତୁଗୁଡ଼ିକ ନଶ୍ୱର ହେଲେହେଁ ଉଦ୍ଭବ ଓ ବିନାଶ ସତ୍ୟ ଅଟେ । ସୁତରାଂ ଆରିଷ୍ଟଟଲ ତାଙ୍କ ଦର୍ଶନରେ ଅଧିକ ଅର୍ଥରେ ବିବର୍ତ୍ତନକୁ ମାନି ନାହାନ୍ତି । ସତ୍ୟ ଉପକାର ଓ ଅପକାର ସମ୍ବନ୍ଧରେ ବିବର୍ତ୍ତନ ପ୍ରଶ୍ନ ଆସିପାରେ ନାହିଁ । ତେବେ ବିଶ୍ୱର ବସ୍ତୁଗୁଡ଼ିକ ମଧ୍ୟରେ ଆରିଷ୍ଟଟଲ ସ୍ତରଭେଦ ସ୍ୱୀକାର କରିଛନ୍ତି । ଏହି କ୍ଷେତ୍ରରେ ବିବର୍ତ୍ତନର ସମ୍ଭାବନା ଥାଇପାରେ । ବିଶ୍ୱର ବସ୍ତୁଗୁଡ଼ିକ ମଧ୍ୟରେ ସର୍ବନିମ୍ନ ସ୍ତରରେ ନିଷ୍ପ୍ରାଣ ଉପାଦାନ, ତତ୍ପରେ ସପ୍ରାଣ ଉପାଦାନ ବିଦ୍ୟମାନ । ସପ୍ରାଣ ଉପାଦାନମାନଙ୍କ ମଧ୍ୟରେ ଉଦ୍ଭିଦ ସର୍ବନିମ୍ନ ସ୍ତରରେ, ତତ୍ପରେ ପ୍ରାଣୀ ଓ ତତ୍ପରେ ମନୁଷ୍ୟ ବିଦ୍ୟମାନ । ମନୁଷ୍ୟ ହିଁ ସବୁ ସୃଷ୍ଟ ପଦାର୍ଥ ମଧ୍ୟରେ ଶ୍ରେଷ୍ଠ ଅଟେ ।

ମନୋବିଜ୍ଞାନ ସମ୍ବନ୍ଧୀୟ ଆଲୋଚନା କରିବାକୁ ଯାଇ ଆରିଷ୍ଟଟଲ ଆତ୍ମା ସମ୍ବନ୍ଧରେ କିଛି ଆଲୋଚନା କରିଛନ୍ତି । ଆତ୍ମା ସମ୍ବନ୍ଧରେ ମୂଳ କଥା ପୂର୍ବରୁ ଆରିଷ୍ଟଟଲଙ୍କ ଅଧିବିଦ୍ୟା ଅଧ୍ୟାୟରେ ଆଲୋଚିତ ହୋଇଛି ।

ମନୋବିଜ୍ଞାନ ସମ୍ବନ୍ଧୀୟ ତଥ୍ୟ ଆରିଷ୍ଟଟଲ ଡ଼ି ଆନିମା ଗ୍ରନ୍ଥରେ ଲେଖିଛନ୍ତି । ଏହି ଗ୍ରନ୍ଥରେ ଆତ୍ମା ସମ୍ବନ୍ଧୀୟ ତାଙ୍କର ମତବାଦ ଲିଉକିପୋସ ଏବଂ ଦାର୍ଶନିକ ଡେମୋକ୍ରାଇଟସ୍ ଜଡ଼ବାଦୀ ମତଠାରୁ ସ୍ୱତନ୍ତ୍ର ଅଟେ । ଆରିଷ୍ଟଟଲଙ୍କର ଆତ୍ମା ସମ୍ବନ୍ଧୀୟ ମତବାଦର ପ୍ଲେଟୋଙ୍କ ମତବାଦ ସହିତ ଅଳ୍ପ ସଦୃଶ ଅଛି । ପ୍ଲେଟୋ ଆତ୍ମାକୁ ଦେହଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ମନେ କରିଥିବା ସ୍ଥଳେ ଆରିଷ୍ଟଟଲ ଆତ୍ମା ଦେହର ଆକାର ଏବଂ ଦେହ ଆତ୍ମାର ଉପାଦାନ ବୋଲି କହିଛନ୍ତି, ଏକଥା କହିଛନ୍ତି । ଏହି କଥା ପୂର୍ବରୁ ଅଧିବିଦ୍ୟା ଅଧ୍ୟାୟରେ ଆଲୋଚିତ ହୋଇଅଛି । ଆରିଷ୍ଟଟଲଙ୍କ ମତରେ ଆତ୍ମା ସଜୀବ ଦେହର ଆକାରଗତ କାରଣ ଏବଂ ଏହା ଐକ୍ୟ ବିଧାୟକ ବା ନିୟନ୍ତ୍ରକ ଶକ୍ତି ଅଟେ । ଆତ୍ମା ଶରୀର ଉଦ୍ଭୂତ ହୋଇଥିଲେ ହେଁ ଆତ୍ମାର ନିଜସ୍ୱ ଗତି ନାହିଁ । ଅର୍ଥାତ୍ ଆତ୍ମା ନିଜେ ଅପରିବର୍ତ୍ତିତ ରହି ଅନ୍ୟ ପରିବର୍ତ୍ତନର ହେତୁ ବିଧାନ କରେ ।

ପ୍ଲେଟୋ ଆତ୍ମାର ନିଜସ୍ୱ ଗତିକୁ ସ୍ୱୀକାର କରିଛନ୍ତି । ଏହି ପ୍ରସଙ୍ଗରେ ଆରିଷ୍ଟଟଲଙ୍କ ମତ ପ୍ଲେଟୋଙ୍କ ମତଠାରୁ ଭିନ୍ନ ଅଟେ । ଆରିଷ୍ଟଟଲଙ୍କ ମତାନୁସାରେ ବିଭିନ୍ନ ଶ୍ରେଣୀର ଆତ୍ମା ଶ୍ରେଷ୍ଠତ୍ୱ ଅନୁସାରେ କ୍ରମ ବିନ୍ୟସ୍ତ । ଏହି କ୍ରମ ବିନ୍ୟାସରେ ଅନୁନ୍ନତ

ଶ୍ରେଣୀର ଆତ୍ମା ସର୍ବଦା ଉନ୍ନତ ଶ୍ରେଣୀର ଆତ୍ମାର ପୂର୍ବରେ ଅବସ୍ଥାନ କରେ । ସବୁଠାରୁ ଅନୁନ୍ନତ ଶ୍ରେଣୀର ଆତ୍ମା ପୁଷ୍ଟିସାଧକ ଆତ୍ମା ଅଟେ । ଏହି ଆତ୍ମା ଖାଦ୍ୟ ଗ୍ରହଣ କରି ଆତ୍ମପୁଷ୍ଟି ସାଧନ କରେ ଓ ବଂଶ ରକ୍ଷା କରେ । ଏହି ଆତ୍ମା ଉଦ୍ଭିଦଜଗତର ଆତ୍ମା ହେଲେହେଁ କେତେକ ପ୍ରାଣୀଙ୍କଠାରେ ମଧ୍ୟ ଏହି ଆତ୍ମା ଦେଖାଯାଏ । ଏହି ଉଦ୍ଭିଦ ଅନ୍ତର୍ଗତ ଆତ୍ମାର ଅନ୍ୟ କୌଣସି ଉଚ୍ଚତର କାର୍ଯ୍ୟକଳାପ ନାହିଁ । ଏହା କେବଳ ପୁଷ୍ଟିସାଧକ ଭାବ କାର୍ଯ୍ୟ କରେ । କାରଣ ଉଦ୍ଭିଦ ପକ୍ଷରେ ସମ୍ବେଦନ ନିଷ୍ପ୍ରୟୋଜନୀୟ । ଏହା ସୁସ୍ପଷ୍ଟ । ଗତିହୀନ ପ୍ରାଣୀମାନଙ୍କ ପକ୍ଷରେ ମଧ୍ୟ ଏହା ପ୍ରଯୁଜ୍ୟ । କିନ୍ତୁ ଗତିଶୀଳ ପ୍ରାଣୀମାନଙ୍କର ସମ୍ବେଦନ ଏକାନ୍ତ ଆବଶ୍ୟକ । କାରଣ ସେମାନେ ଯଦି ଖାଦ୍ୟକୁ ଖାଦ୍ୟ ବୋଲି ଜାଣି ନ ପାରନ୍ତି ତେବେ ସେମାନଙ୍କର ଖାଦ୍ୟ ସମ୍ବନ୍ଧେ ଗତି ଅର୍ଥହୀନ ହେବ । ସେଥିପାଇଁ ଆରିଷ୍ଟଟଲ ସକଳ ପ୍ରାଣୀମାନଙ୍କର ଆତ୍ମାକୁ ଉନ୍ନତରେ ଏବଂ ସମ୍ବେଦନଶୀଳ ଆଖ୍ୟା ଦେଇଛନ୍ତି । ଏହି ସମ୍ବେଦନଶୀଳ ଆତ୍ମାର ତ୍ରିବିଧ ବୃତ୍ତି ବିଦ୍ୟମାନ । (୧) ଇନ୍ଦ୍ରିୟ ପ୍ରତ୍ୟକ୍ଷ, (୨) କାମନା, (୩) ସ୍ଥାନୀୟ ଗତି । କଳ୍ପନା ଇନ୍ଦ୍ରିୟପ୍ରତ୍ୟକ୍ଷ ନିର୍ଭର ଅଟେ । ସ୍ମୃତି କଳ୍ପନାଠାରୁ ଉନ୍ନତତର ।

ସ୍ପର୍ଶ ଓ ସ୍ୱାଦ, ପୁଷ୍ଟି ଲାଗି ପ୍ରାଣୀ ପକ୍ଷରେ ଅପରିହାର୍ଯ୍ୟ ଅଟେ । ପ୍ରାଣୀ ଯଦି ଖାଦ୍ୟ ସ୍ପର୍ଶ ନ କରେ ଏବଂ ସ୍ୱାଦ ଗ୍ରହଣ କରି ନ ପାରେ, ତାହେଲେ ଖାଦ୍ୟ ସମ୍ବନ୍ଧେ ଆକର୍ଷଣ ବୋଧ କରିବ ନାହିଁ । କିନ୍ତୁ ପ୍ରାଣୀ ଆତ୍ମାଠାରୁ ମନୁଷ୍ୟ ଆତ୍ମା ଆହୁରି ଉନ୍ନତତର । ମନୁଷ୍ୟର ଆତ୍ମାରେ ଅନୁନ୍ନତ ଆତ୍ମାର ସମସ୍ତ ବୃତ୍ତି ଥିବା ସଙ୍ଗେ ସଙ୍ଗେ ଅନ୍ୟ ଏକ ଉନ୍ନତ ଶକ୍ତି ଅଛି । ଏହାକୁ ପ୍ରଜ୍ଞାବୃତ୍ତି ବୁଝାଯାଏ । ଏହି ବୃତ୍ତି ଦ୍ୱିବିଧ ଭାବରେ ପ୍ରକାଶିତ । ବୈଜ୍ଞାନିକ ଚିନ୍ତାବୃତ୍ତି ଏବଂ ବିଚାରବୃତ୍ତି । ଏହି ପ୍ରଜ୍ଞାବୃତ୍ତି ଭିନ୍ନ ଆତ୍ମାର ଅନ୍ୟ ସମସ୍ତ ବୃତ୍ତି ଦେହ ସହିତ ଅବିଚ୍ଛିନ୍ନ ଭାବେ ଜଡ଼ିତ ଓ ନଶ୍ୱର । ଏକମାତ୍ର ପ୍ରଜ୍ଞାଶକ୍ତି ହିଁ ଅବିନଶ୍ୱର ।

ଆରିଷ୍ଟଟଲ ପ୍ରଜ୍ଞାକୁ ମଧ୍ୟ ଦୁଇଭାଗରେ ବିଭକ୍ତ କରିଛନ୍ତି । ସକ୍ରିୟପ୍ରଜ୍ଞା ଏବଂ ନିଷ୍କ୍ରିୟପ୍ରଜ୍ଞା । ଉପାଦାନ ସମ୍ପର୍କହୀନ ବସ୍ତୁର ଆକାରରୂପୀ ପ୍ରଜ୍ଞା, ସକ୍ରିୟ ପ୍ରଜ୍ଞା ଅଟେ ।

ଆରିଷ୍ଟଟଲଙ୍କ ମତରେ ଆତ୍ମା ଓ ଦେହ ଉଭୟେ ଆକାର ଓ ଉପାଦାନରୂପେ ପରସ୍ପର ଘନିଷ୍ଠ ଭାବରେ ସଂଯୁକ୍ତ । ଯେଉଁମାନେ ଆତ୍ମାକୁ ଦେହ ଅପେକ୍ଷା ଅଧିକତର

ନିଶ୍ଚିତ ମନେକରନ୍ତି ଏବଂ ଦେହର ଅସ୍ତିତ୍ୱ ଆତ୍ମା ଭିତ୍ତିରୁ ହିଁ ଅନୁମାନ କରନ୍ତି (ଯେପରି ପରବର୍ତ୍ତୀ କାଳରେ ଡେକାର୍ଟ 'Descartes') ସେମାନଙ୍କଠାରୁ ଆରିଷ୍ଟଟଲ ସ୍ୱତନ୍ତ୍ର । ପୁନଶ୍ଚ ଯେଉଁମାନେ ଦେହକୁ ପ୍ରାଧାନ୍ୟ ଦେଇ ଆତ୍ମାକୁ ଦେହର ଅପ୍ରଧାନ ସୃଷ୍ଟି ବୋଲି ମନେକରନ୍ତି ଆରିଷ୍ଟଟଲ ସେହି ଦାର୍ଶନିକମାନଙ୍କଠାରୁ ମଧ୍ୟ ସ୍ୱତନ୍ତ୍ର ମତବାଦ ପ୍ରକାଶ କରିଛନ୍ତି ।

ମୂଳତଃ ଆରିଷ୍ଟଟଲ ଆତ୍ମା ଓ ଦେହର ନିବିଡ଼ ସମ୍ପର୍କକୁ ସ୍ୱୀକାର କରିଥିଲେହେଁ ପ୍ରଜ୍ଞା ପରିପ୍ରେକ୍ଷୀରେ ଆତ୍ମାର ଶ୍ରେଷ୍ଠତ୍ୱ ସ୍ୱୀକାର କରିଅଛନ୍ତି ।

———

# ଷଷ୍ଠ ଅଧ୍ୟାୟ

## ଆରିଷ୍ଟଟଲଙ୍କ ନୀତିଶାସ୍ତ୍ର

ଆରିଷ୍ଟଟଲଙ୍କ ନୀତିଶାସ୍ତ୍ର ଉଦ୍ଦେଶ୍ୟମୂଳକ ଅଟେ । ମନୁଷ୍ୟର କଲ୍ୟାଣ ବିଧାନକାରୀ କର୍ମ ହିଁ ତାଙ୍କ ମତରେ 'ସତ୍କର୍ମ' । ଯେଉଁ କର୍ମ ମାନବସମାଜର କଲ୍ୟାଣ ବିଧାନ କରେ, ତାହା ସତ୍କର୍ମ ଓ ଯେଉଁ କର୍ମ କଲ୍ୟାଣ ବିଧାନ କରେ ନାହିଁ ତାହା ଅସତ୍କର୍ମ ଅଟେ ।

ପ୍ରତ୍ୟେକ କର୍ମ କୌଣସି ନା କୌଣସି ଉଦ୍ଦେଶ୍ୟଦ୍ୱାରା ହିଁ ସାଧିତ ହୋଇଥାଏ । ବିଭିନ୍ନ କର୍ମର ବିଭିନ୍ନ ଉଦ୍ଦେଶ୍ୟ ଥିବା ସ୍ୱାଭାବିକ । କଲ୍ୟାଣ ଶବ୍ଦର ଅର୍ଥ ଏଠାରେ ଉଦ୍ଦେଶ୍ୟ ରୂପେ ବ୍ୟବହାର କରାଯାଇଅଛି । ଉଦାହରଣ ସ୍ୱରୂପ :—ଚିକିତ୍ସକର କର୍ମର ଉଦ୍ଦେଶ୍ୟ ସ୍ୱାସ୍ଥ୍ୟ ଲାଭ, ନାବିକର ଉଦ୍ଦେଶ୍ୟ ନିରାପଦ ସମୁଦ୍ର ଯାତ୍ରା, ଅର୍ଥନୈତିକ କର୍ମର ଉଦ୍ଦେଶ୍ୟ ସମ୍ପଦ ପ୍ରାପ୍ତି, ପ୍ରଭୃତି । ଉଦ୍ଦେଶ୍ୟ ବା କଲ୍ୟାଣ ପୁନଶ୍ଚ କୌଣସି ମହତ୍ତର ଉଦ୍ଦେଶ୍ୟର ଅଧୀନ ଅଟେ । ଯେପରି କୌଣସି ଔଷଧ ସେବନର ଉଦ୍ଦେଶ୍ୟ ସୁନିଦ୍ରା ସ୍ଥଳେ ପୁନଶ୍ଚ ବୃହତ୍ତର ଉଦ୍ଦେଶ୍ୟ ସ୍ୱାସ୍ଥ୍ୟ ଲାଭର ଅନ୍ତର୍ଭୁକ୍ତ ହୋଇପାରେ । ଅର୍ଥାତ ସ୍ୱାସ୍ଥ୍ୟ ଲାଭ ନିମନ୍ତେ ହିଁ ସୁନିଦ୍ରା ପ୍ରୟୋଜନ । ଏହିପରି କର୍ମର ଭିନ୍ନ ଉଦ୍ଦେଶ୍ୟ ବା କଲ୍ୟାଣ ଏକ ଅପରର ଅନ୍ତର୍ଗତ ହୋଇପାରେ । କିନ୍ତୁ ଆରିଷ୍ଟଟଲଙ୍କ ନୀତିଶାସ୍ତ୍ର ଅନ୍ତର୍ଗତ ଉଦ୍ଦେଶ୍ୟ ଅନ୍ୟ ଧରଣର ଅଟେ । ସେ ବିଷୟରେ ସେ କହିଛନ୍ତି ଯେ ଏପରି କୌଣସି ଉଦ୍ଦେଶ୍ୟ ବା କଲ୍ୟାଣ ଅଛି ଯାହା ଅନ୍ୟ କୌଣସି ଉଦ୍ଦେଶ୍ୟ ବା କଲ୍ୟାଣର ଅନ୍ତର୍ଗତ ନୁହେଁ; କିନ୍ତୁ ଅନ୍ୟାନ୍ୟ ସମସ୍ତ ଉଦ୍ଦେଶ୍ୟ ବା କଲ୍ୟାଣ ଏହାର ଅନ୍ତର୍ଗତ । ଏହିପରି କୌଣସି କଲ୍ୟାଣ ବା ଉଦ୍ଦେଶ୍ୟ ସର୍ବୋତ୍ତମ କଲ୍ୟାଣ ଅଟେ । ନୀତିଶାସ୍ତ୍ରର ମୁଖ୍ୟ ଆଲୋଚ୍ୟ ବିଷୟ ଏହି କଲ୍ୟାଣ ବା କଲ୍ୟାଣ ସମ୍ବନ୍ଧୀୟ ।

ଆରିଷ୍ଟଟଲଙ୍କ ମତରେ ମାନବିକ କଲ୍ୟାଣ ନେଇ ଯେଉଁ ଶାସ୍ତ୍ର ଆଲୋଚନା କରେ ତାହାକୁ ରାଷ୍ଟ୍ରବିଜ୍ଞାନ ବା ସାମାଜିକ ବିଜ୍ଞାନ କୁହାଯାଏ । ରାଷ୍ଟ୍ରର ଓ ବ୍ୟକ୍ତିର କଲ୍ୟାଣ ଏକ ହେଲା ସ୍ଥଳେ ରାଷ୍ଟ୍ରର କଲ୍ୟାଣ ବ୍ୟାପକ ଓ ମହତ୍ତର ଅର୍ଥରେ ପ୍ରଯୁଜ୍ୟ । ଏହି ସମ୍ପର୍କରେ ପ୍ଲେଟୋ ମଧ୍ୟ ତାଙ୍କର ରିପବ୍ଲିକ ଗ୍ରନ୍ଥରେ (Republic) କଲ୍ୟାଣ ସମ୍ବନ୍ଧୀୟ ଏହି ମତବାଦ ପ୍ରଚାର କରିଛନ୍ତି । ପ୍ଲେଟୋଙ୍କ ମତରେ ଆଦର୍ଶ ରାଷ୍ଟ୍ରର ନ୍ୟାୟପରାୟଣତା ବ୍ୟକ୍ତିର ନ୍ୟାୟପରାୟଣତା ଅପେକ୍ଷା ବ୍ୟାପକ । ଆରିଷ୍ଟଟଲଙ୍କ

ମତରେ ନୀତିଶାସ୍ତ୍ର, ରାଷ୍ଟ୍ରବିଜ୍ଞାନ ବା ସାମାଜିକ ବିଜ୍ଞାନର ଏକ ଶାଖା ଅଟେ । ସେ ତାଙ୍କ **ପଲିଟିକ୍ସ** ଗ୍ରନ୍ଥରେ ପ୍ରଥମତଃ ବ୍ୟକ୍ତିକେନ୍ଦ୍ରିକ ନୀତିଶାସ୍ତ୍ର ଏବଂ ପରେ ରାଷ୍ଟ୍ରୀୟ ନୀତିଶାସ୍ତ୍ର ସମ୍ବନ୍ଧରେ ଆଲୋଚନା କରିଛନ୍ତି ।

ମାନବ କଲ୍ୟାଣର ପ୍ରକୃତ ସମ୍ବନ୍ଧରେ ଆରିଷ୍ଟଟଲଙ୍କ ମତ ଏହି ଯେ ଏହା ଗାଣିତିକ ସମସ୍ୟାର ସମାଧାନ ଭଳି ସହଜ ନୁହେଁ । କାରଣ ନୀତିଶାସ୍ତ୍ରର ଆଲୋଚ୍ୟ କଲ୍ୟାଣ ମନୁଷ୍ୟର କର୍ମ ସହିତ ସଂଶ୍ଲିଷ୍ଟ । ଗଣିତ ଓ ନୀତିଶାସ୍ତ୍ର ମଧ୍ୟରେ ପାର୍ଥକ୍ୟ ଏହି ଯେ ଗଣିତରେ ଆମେ କେତେଗୁଡ଼ିଏ ସାଧାରଣ ସୂତ୍ରରୁ ସିଦ୍ଧାନ୍ତ ଆଣିଥାଉ । କିନ୍ତୁ ନୀତିଶାସ୍ତ୍ରରେ ଆମ୍ଭେମାନେ ସିଦ୍ଧାନ୍ତରୁ ଆରମ୍ଭ କରୁ ଏବଂ ଏହି ସିଦ୍ଧାନ୍ତ ଭିତ୍ତିରେ ସାଧାରଣ ସୂତ୍ର ଆବିଷ୍କାର କରୁ । ନୀତିଶାସ୍ତ୍ରରେ ମନୁଷ୍ୟର ନୈତିକ ଆଲୋଚନା ଆରମ୍ଭ ହୋଇଛି । ନୈତିକ ବିଷୟଗୁଡ଼ିକୁ ପରସ୍ପର ତୁଳନା କରି ନୀତିର ସାଧାରଣ ନିୟମ ସ୍ଥିର କରାଯାଏ ।

ଆରିଷ୍ଟଟଲ ତାଙ୍କ ନୀତିଶାସ୍ତ୍ରରେ ଅବରୋହ ରୀତି ଅନୁସରଣ କରି ନାହାନ୍ତି । ସାଧାରଣ ମନୁଷ୍ୟ ଯେପରି ନୈତିକ ବିଚାର କରିଥାଏ ସେହି ଭାବରେ ନୈତିକ ବିଚାର ଭିତ୍ତିରେ ନୈତିକ ସୂତ୍ର ଆବିଷ୍କାର କରିଛନ୍ତି ।

ଆରିଷ୍ଟଟଲଙ୍କ ମତରେ ସାଧାରଣତଃ ମନୁଷ୍ୟର ଧାରଣା ଯେ ଆନନ୍ଦ ହିଁ ଜୀବନର ପରମ ପୁରୁଷାର୍ଥ ଅଟେ । ଆନନ୍ଦ କହିଲେ ସମସ୍ତେ ଏକ ଅର୍ଥରେ ନ ବୁଝିବା ସ୍ୱାଭାବିକ । କେହି କେହି ଆନନ୍ଦ ଅର୍ଥ ସୁଖ ବୁଝିଲା ବେଳେ ଅନ୍ୟ କେହି ଏହାକୁ ସମ୍ପଦ ବା ସମ୍ମାନ ଅର୍ଥରେ ଗ୍ରହଣ କରିଥାନ୍ତି । ଜଣେ ମନୁଷ୍ୟର ମଧ୍ୟ ଭିନ୍ନ ସମୟରେ ଭିନ୍ନ ମାନସିକ ଅବସ୍ଥାରେ ଆନନ୍ଦ ସମ୍ବନ୍ଧରେ ଭିନ୍ନ ଧାରଣା ଆସିଥାଏ । ଆରିଷ୍ଟଟଲଙ୍କ ମତରେ ଆନନ୍ଦ ଏକପ୍ରକାର ମାନବିକ କ୍ରିୟା । ଏହି କ୍ରିୟା ଇତର ପ୍ରାଣୀମାନଙ୍କ ମଧ୍ୟରେ ନ ଥାଏ । ତେଣୁ ଆରିଷ୍ଟଟଲଙ୍କ ମତରେ ଆନନ୍ଦ ପୁଷ୍ଟି ବା ବଂଶବୃଦ୍ଧି ବା ସଂବେଦନ କ୍ରିୟା ସହିତ ଜଡ଼ିତ ନୁହେଁ । ଏହି ସବୁ କ୍ରିୟା ମାନବେତର ପ୍ରାଣୀମାନଙ୍କ ମଧ୍ୟରେ ଦେଖାଯାଏ । ଅତଏବ ଯେଉଁ କ୍ରିୟା କେବଳ ମନୁଷ୍ୟ ମଧ୍ୟରେ ବିଦ୍ୟମାନ ସେହି କ୍ରିୟା ସହିତ ହିଁ ଆନନ୍ଦ ସଂଶ୍ଲିଷ୍ଟ । ଆରିଷ୍ଟଟଲଙ୍କ ମତରେ ବିଚାରକ୍ରିୟା ବା ବିଚାର ଅନୁସାରେ କ୍ରିୟା ମନୁଷ୍ୟର ବିଶିଷ୍ଟ କ୍ରିୟା ଅଟେ । ଏହି କ୍ରିୟାର ନାମ ଆରିଷ୍ଟଟଲ ପୁଣ୍ୟକ୍ରିୟା ବୋଲି କହିଛନ୍ତି ଓ ଏହା ଦ୍ୱିବିଧ ପ୍ରକାରର— ନୈତିକ ଏବଂ ପ୍ରାଜ୍ଞିକ । ଆରିଷ୍ଟଟଲଙ୍କ ମତରେ ଜୀବନର ପରମ ପୁରୁଷାର୍ଥ ଆନନ୍ଦ ନୈତିକ ପ୍ରାଜ୍ଞିକ କ୍ରିୟା ବା କର୍ମ ସହିତ ଜଡ଼ିତ । ଏହି ଆନନ୍ଦ ଜୀବନର କୌଣସି ବିଶେଷ ସମୟର ବା

କୌଣସି ମାନସିକ କ୍ଷେତ୍ର ନ ହୋଇ ସମଗ୍ର ଜୀବନର ପର୍ଯ୍ୟବେକ୍ଷଣ ବିଷୟ ସମ୍ବନ୍ଧୀୟ ଅଟେ ।

ଆରିଷ୍ଟଟଲଙ୍କ ଆନନ୍ଦ ସମ୍ବନ୍ଧୀୟ ଏହି ଧାରଣା ସହିତ ସାଧାରଣ ଲୋକଙ୍କର ଆନନ୍ଦ ସମ୍ବନ୍ଧୀୟ ଧାରଣାର କେତେକାଂଶରେ ସାଦୃଶ୍ୟ ଅଛି । ଆନନ୍ଦ ଯେଉଁ ପୁଣ୍ୟକ୍ରିୟା ସହିତ ଜଡ଼ିତ ସେହି ପୁଣ୍ୟ କ୍ରିୟାକୁ ଆରିଷ୍ଟଟଲ ସ୍ୱାଧୀନ କ୍ରିୟା ଆଖ୍ୟା ଦେଇଛନ୍ତି । ଏହି ସ୍ୱାଧୀନ ବା ଅବାଧକ୍ରିୟା ସହିତ ସର୍ବଦା ସୁଖ ସଂଶ୍ଳିଷ୍ଟ । ସୁଖ ପୁଣି ବାହ୍ୟ ସମ୍ପଦ ସହିତ ଜଡ଼ିତ ଅଟେ । ଅତଏବ ଆରିଷ୍ଟଟଲ ଯେଉଁ ଆନନ୍ଦକୁ ପରମ ପୁରୁଷାର୍ଥ ବୋଲି କହିଛନ୍ତି ସେହି ଆନନ୍ଦର ସୁଖ ଓ ବାହ୍ୟ ସମ୍ପଦର ସ୍ଥାନ ମଧ୍ୟ ଅଛି । ସେଥିପାଇଁ ଆରିଷ୍ଟଟଲଙ୍କ ଆନନ୍ଦ ସମ୍ବନ୍ଧୀୟ ଧାରଣା ସହିତ ସାଧାରଣ ଲୋକଙ୍କର ଆନନ୍ଦ ସମ୍ବନ୍ଧୀୟ ଧାରଣାର ସାଦୃଶ୍ୟ ବିଦ୍ୟମାନ ।

ସଚ୍ଚରିତ୍ର ସମ୍ବନ୍ଧରେ ଆଲୋଚନା ପ୍ରସଙ୍ଗରେ ଆରିଷ୍ଟଟଲ କହିଛନ୍ତି, ପ୍ରତ୍ୟେକ ମନୁଷ୍ୟର ସଚ୍ଚରିତ୍ରର ଶକ୍ତି ବା ସମ୍ଭାବନା ଅଛି । ଅଭ୍ୟାସ କିମ୍ବା ଅନୁଶୀଳନ ଦ୍ୱାରା ଏହି ଶକ୍ତି ବିକଶିତ ହୋଇପାରେ । ବିଶେଷରେ ପୁଣ୍ୟକର୍ମ ଅନୁଷ୍ଠାନ ମାଧ୍ୟମରେ ଏହି ଶକ୍ତି ବିକଶିତ ହୋଇଥାଏ । ପୁଣ୍ୟକର୍ମର ଅନୁଶୀଳନ ଦ୍ୱାରା ହିଁ ପୁଣ୍ୟବାନ ହେବା ସମ୍ଭବ । କିନ୍ତୁ ପୁଣ୍ୟବାନ ନ ହୋଇ ପୁଣ୍ୟକର୍ମର ଅନୁଷ୍ଠାନ କରିବା ଅସମ୍ଭବ କେତେକ ଦାର୍ଶନିକ କହନ୍ତି ଆରିଷ୍ଟଟଲ ଏହି ଯୁକ୍ତିରେ ଚକ୍ରକ ଦୋଷ ସୃଷ୍ଟି କରିଛନ୍ତି । କିନ୍ତୁ ଏ ଧାରଣା ଭ୍ରାନ୍ତିମୂଳକ ଅଟେ । କାରଣ ଆରିଷ୍ଟଟଲଙ୍କ ମତରେ ମନୁଷ୍ୟ ପୁଣ୍ୟକର୍ମକୁ ପୁଣ୍ୟକର୍ମ ବୋଲି ନ ଜାଣି କରିଥାଏ । ପରେ ଏହି କର୍ମ ଅଭ୍ୟାସରେ ପରିଣତ ହୋଇଥାଏ ସେତେବେଳେ ଏହି ପୁଣ୍ୟକର୍ମ ସମ୍ବନ୍ଧରେ ସଚେତନ ହୋଇ ସ୍ୱଇଚ୍ଛାରେ ସତ୍କର୍ମମାନ କରିଥାଏ । ଉଦାହରଣ ସ୍ୱରୂପ :— ଗୁରୁଜନମାନେ ସାଧାରଣତଃ ପିଲାଙ୍କୁ ମିଥ୍ୟାକଥା କହିବାକୁ ନିଷେଧ କରିଥାନ୍ତି ଏବଂ ପିଲାମାନେ ସେହି କଥା ମାନି ତାହାକୁ ଅଭ୍ୟାସରେ ପରିଣତ କରନ୍ତି । କିନ୍ତୁ ସତକଥା କହିବା ଯେ ଭଲ ସେ କଥା ସେମାନଙ୍କର ସେତେବେଳେ ଧାରଣା ଭିତରେ ନ ଥାଏ । କିନ୍ତୁ ଏହାପରେ କ୍ରମେ ମିଥ୍ୟା ନ କହି ସତ୍ୟ କହିବାରୁ ସତ୍ୟ କଥା କହିବାର ଅଭ୍ୟାସ ହୋଇଥାଏ ଏବଂ ପିଲାଙ୍କର ବୁଦ୍ଧିର ଅଗ୍ରଗତି ଦ୍ୱାରା ସତ୍ୟ କହିବା ଉଚିତ ବୋଲି ପରେ ବୁଝିଥାନ୍ତି ଏବଂ ସେତେବେଳେ ସେମାନେ ସ୍ୱଇଚ୍ଛାରେ ସତ୍ୟ କଥା କହନ୍ତି । ପୁଣ୍ୟ ଏକ ସୃଷ୍ଟି ଅଭ୍ୟାସ । ଏକ ବିଶେଷ ପ୍ରକାରର କର୍ମ ଅନୁଶୀଳନ ଦ୍ୱାରା ହିଁ ଏହା ସମ୍ଭବ । ଅତଏବ ଆରିଷ୍ଟଟଲଙ୍କ ମତରେ ଅବିଚ୍ଛିନ୍ନ ସତ୍କର୍ମ ଫଳରେ ଏକ ଅଭ୍ୟାସ ସୃଷ୍ଟି ହୋଇଥାଏ ଓ ଏହି ସୃଷ୍ଟି ଅଭ୍ୟାସ ଦ୍ୱାରା ହିଁ ମନୁଷ୍ୟ ସଚେତନ ଭାବରେ ସତ୍କର୍ମ

କରେ । ଏହିଭଳି ଏହି ଦ୍ୱିବିଧ କର୍ମ ମଧ୍ୟରେ ପାର୍ଥକ୍ୟ ଦର୍ଶାଇ ଆରିଷ୍ଟଟଲ ପ୍ଲେଟୋଙ୍କ ମତ ଖଣ୍ଡନ କରିଛନ୍ତି ।

ପ୍ଲେଟୋଙ୍କ ମତରେ ପୁଣ୍ୟ ଜ୍ଞାନ ମଧ୍ୟରେ ପ୍ରଭେଦ ନାହିଁ । ପ୍ଲେଟୋ ପୁଣ୍ୟର ପାର୍ଥକ୍ୟ ଓ ଐକ୍ୟ ଉଭୟକୁ ସ୍ୱୀକାର କରିଛନ୍ତି । **ମେନୋ** ଗ୍ରନ୍ଥରେ ପ୍ଲେଟୋ କହିଛନ୍ତି ଯେ ପୁଣ୍ୟ ଜ୍ଞାନ ଏକ ମାତ୍ର ଶିକ୍ଷା ଦ୍ୱାରାହିଁ ସମ୍ଭବ । କିନ୍ତୁ **ରିପବ୍ଲିକ** ଗ୍ରନ୍ଥରେ ସେ କହିଛନ୍ତି କେବଳ ଦାର୍ଶନିକହିଁ ମାନବ କଲ୍ୟାଣର ଯଥାର୍ଥ ଜ୍ଞାନର ଅଧିକାରୀ ଅଟେ । ଅତଏବ କେବଳ ଦାର୍ଶନିକ ହିଁ କଲ୍ୟାଣ ବା ପୁଣ୍ୟ ଶିକ୍ଷା ଦାନ କରିବା ଉପରେ ଅଧିକାରୀ ଅଟେ । ପ୍ଲେଟୋଙ୍କ ମତରେ ପୁଣ୍ୟ ଯଥାର୍ଥ ଜ୍ଞାନ ସହିତ ସଂପୃକ୍ତ ହୋଇଥିବାରୁ ଏହା ନିତ୍ୟ ଅଟେ । ଏହି ପ୍ରସଙ୍ଗରେ ପ୍ଲେଟୋ କହିଛନ୍ତି ଯେ ମନୁଷ୍ୟ କେବେ ଜ୍ଞାତସାରରେ ଏପରି କର୍ମ କରେ ନାହିଁ ଯାହା ଫଳରେ ତାର ପାପ ଅର୍ଜନ ହୁଏ । **ରିପବ୍ଲିକ** ଗ୍ରନ୍ଥରେ ପ୍ଲେଟୋ ଚାରି ପ୍ରକାରର ମୁଖ୍ୟ ପୁଣ୍ୟ ବିଷୟରେ ଆଲୋଚନା କରିଛନ୍ତି ଯଥା ;— ପ୍ରଜ୍ଞା, ସାହସ ମିତାଚାର ଓ ନ୍ୟାୟପରାୟଣତା । ପ୍ଲେଟୋଙ୍କ ମତରେ— Justice is a general virtue consisting in this, that every part of this soul performs its proper task in due harmony —*Republic*
କିନ୍ତୁ ଆରିଷ୍ଟଟଲଙ୍କ ମତରେ ପୁଣ୍ୟ ଅତିରେକତା ଓ ନ୍ୟୂନତାର ମଧ୍ୟ ଅବସ୍ଥା । ଅତିରେକତା ଓ ନ୍ୟୂନତା ଉଭୟେ ପାପ ଅଟେ ; ଯଥା — ଅହଂକାରିତା ଓ ଭୀରୁତା ଉଭୟ ଅତିରେକତା ଓ ନ୍ୟୂନତା ପାପ ଅଟେ । ଏହି ଉଭୟଙ୍କର ମଧ୍ୟ ଅବସ୍ଥାକୁ ସାହସିକତା କୁହାଯାଏ ଏବଂ ଏହା ତାଙ୍କ ମତରେ ପୁଣ୍ୟ ଅଟେ । ପୁନଶ୍ଚ ଅତିରେକତା; ଯଥା :— ଅମିତବ୍ୟୟିତା ଓ ନ୍ୟୂନତା, ଯଥା— କୃପଣତା, ଏହି ଉଭୟେ ପାପ । ଏହି ଦୁହିଁଙ୍କର ମଧ୍ୟଅବସ୍ଥା; ଯଥା— ମିତବ୍ୟୟିତା ପୁଣ୍ୟ ଅଟେ । ଆରିଷ୍ଟଟଲଙ୍କ ମତରେ ବିଶେଷଣ ଅନୁସାରେ ନୈତିକ ପୁଣ୍ୟକର୍ମ ନିର୍ବାଚନର ଏକ ଅଭ୍ୟାସ । କୌଣସି ବିଶେଷ ପରିସ୍ଥିତିରେ ଯାହା ପୁଣ୍ୟ ତାହା ନିର୍ବାଚନ କରିବାର ବ୍ୟବହାରିକ ପ୍ରଜ୍ଞା ପ୍ରକୃତ ପୁଣ୍ୟବାନ ବ୍ୟକ୍ତିର ଅପରିହାର୍ଯ୍ୟ ଅଙ୍ଗ ଅଟେ । ନୈତିକତା କ୍ଷେତ୍ରରେ ଆରିଷ୍ଟଟଲ ଔପପତ୍ତିକ ଚିନ୍ତନକୁ ପରିହାର କରିଛନ୍ତି ଓ ବ୍ୟବହାରିକ ପ୍ରଜ୍ଞା ମାଧ୍ୟମରେ ପୁଣ୍ୟ ନିର୍ବାଚନ ସମ୍ବନ୍ଧରେ ଗୁରୁତ୍ୱ ଆରୋପ କରିଛନ୍ତି ।

"Moral virtue is a disposition to choose, consisting essentially in a mean relatively to us determined by a rule i.e. the rule by which a practically wise man would determine it" *Nicomachean Ethics*

ଆରିଷ୍ଟଟଲଙ୍କ ମତରେ ଅତିରେକତା, ନ୍ୟୂନତା ଓ ମଧ୍ୟଅବସ୍ଥା ଏଗୁଡିକ ନିର୍ଦ୍ଦିଷ୍ଟ ଏକ ପ୍ରକ୍ରିୟା ହିସାବ ପ୍ରଯୁଜ୍ୟ ନୁହେଁ । ବ୍ୟବହାରିକ ପ୍ରଜ୍ଞା ହିଁ ଏହି ସମସ୍ତ କ୍ଷେତ୍ରରେ ବିଚାରର ନିୟାମକ ଅଟେ । ମଧ୍ୟଅବସ୍ଥା ହିଁ ଉତ୍କୃଷ୍ଟ ଅବସ୍ଥା ଏବଂ ଯେଉଁମାନେ ଉତ୍କୃଷ୍ଟ ସେହିମାନେ ହିଁ ଏହି ଉତ୍କୃଷ୍ଟ ଅବସ୍ଥାର ଅଧିକାରୀ ଅଟନ୍ତି । ଅଧ୍ୟାପକ ନିକୋଲାଇ ହାର୍ଟମ୍ୟାନ ( Hartmann ) ତାଙ୍କର **ଏଥିକସ୍** ( Ethics ) ଗ୍ରନ୍ଥରେ ଏକ ଚିତ୍ର ମାଧ୍ୟମରେ ଏ ବିଷୟ ସମ୍ବନ୍ଧରେ ବ୍ୟାଖ୍ୟା କରିଛନ୍ତି । ତାହା ନିମ୍ନରେ ପ୍ରଦତ୍ତ ହୋଇଛି ।




ଉପରୋକ୍ତ ଚିତ୍ରରେ ନିମ୍ନ ସମତଳ ରେଖା ଆଧିଭୌତିକ ଅଟେ ଏବଂ ଉର୍ଦ୍ଧ୍ୱ ବକ୍ରରେଖା ମୂଲ୍ୟବୋଧକ ଅବସ୍ଥା ପ୍ରକାଶ କରୁଅଛି । ଏହି ଚିତ୍ରଦ୍ୱାରା ବୁଝି ଯାଏ ଯେ ପୁଣ୍ୟର ଦ୍ୱିବିଧ ଅବସ୍ଥା ଅଛି । ଆଧିଭୌତିକ ଅବସ୍ଥା ଦୃଷ୍ଟିରୁ ପୁଣ୍ୟ ମଧ୍ୟ ଅବସ୍ଥା ଅଟେ ଏବଂ ମୂଲ୍ୟବୋଧକ ଅବସ୍ଥା ଦୃଷ୍ଟିରୁ ପୁଣ୍ୟ ଶ୍ରେଷ୍ଠ ଅବସ୍ଥା ଅଟେ ।

ଆରିଷ୍ଟଟଲ ମଧ୍ୟଅବସ୍ଥା ଭିତ୍ତିରେ ଦୁଇଟି ବିପରୀତ ଅବସ୍ଥାର ସାମ୍ୟାବସ୍ଥା କଳ୍ପନା କରିଛନ୍ତି । ସାହସିକତା କହିଲେ ପ୍ରଗଲ୍‌ଭତା ବା ନିରୁଦ୍ୟମ ପରିଣାମଦର୍ଶିତା କୌଣସି କଥାକୁ ବୁଝାଏ ନାହିଁ । ଉଭୟଙ୍କର ସୁଷମ ସାମ୍ୟ ଅବସ୍ଥାକୁ ହିଁ ପ୍ରକାଶ କରିଥାଏ । ଏହି ସାମ୍ୟ ଅବସ୍ଥା ସାହସିକତାକୁ ଦୁଃସାହସ ପର୍ଯ୍ୟାୟଭୁକ୍ତ କରେ ନାହିଁ ବା ଭୀରୁତାର ପରିଣାମଦର୍ଶିତା ରୂପାନ୍ତର କରେ ନାହିଁ । ସାହସିକତା ଏକ ସଙ୍ଗେ

ସଚେଷ୍ଟତା ଓ ପରୋପକାରିତାକୁ ବୁଝାଇଥାଏ । ଆରିଷ୍ଟଟଲ ନୈତିକ ଜୀବନର ପରିବେଶ ବୋଧ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ଏହି ଚିନ୍ତା ତାଙ୍କର ( **Aesthetic attitudes of the Greeks** ) ଗ୍ରୀକ କାନ୍ତିବିଦ୍ୟା ଦୃଷ୍ଟିଭଙ୍ଗୀରୁ ଅନୁସୃତ ।

## ନୈତିକ କର୍ମ ଓ ବିଚାର :—

ନୈତିକ କର୍ମ ଓ ନୈତିକ ବିଚାର ବ୍ୟକ୍ତି ସ୍ୱାଧୀନତା ସାପେକ୍ଷ ଅଟେ । ଯେଉଁ ବ୍ୟକ୍ତି ସ୍ୱେଚ୍ଛାକୃତ ଭାବରେ କୌଣସି କର୍ମ କରେ, ସେଥିପାଇଁ ସେହି ବ୍ୟକ୍ତି ହିଁ ଦାୟୀ ଅଟେ । ସେହି କର୍ମର ଭଲ, ମନ୍ଦ ମଧ୍ୟ ନୈତିକ ବିଚାରଯୋଗ୍ୟ ଅଟେ । ଯେଉଁ ବ୍ୟକ୍ତି ପୁନଶ୍ଚ କୌଣସି କର୍ମ ଅଜ୍ଞାତସାରରେ କରିଥାଏ ବା କରିବାକୁ ବାଧ୍ୟ ହୁଏ, ସେହି କାର୍ଯ୍ୟ ପାଇଁ ସେ ବ୍ୟକ୍ତି ଦାୟୀ ନୁହେଁ । ଯଦି କେହି ଅଜ୍ଞାନବଶତଃ କୌଣସି କର୍ମ କରେ ଏବଂ ପରେ ସେ ସେହି କର୍ମ ପାଇଁ ଅନୁତପ୍ତ ହୁଏ, ସେହି ପ୍ରକାର କର୍ମକୁ ଆରିଷ୍ଟଟଲ ଅନଭିପ୍ରେତ କର୍ମ ବୋଲି ଆଖ୍ୟା ଦେଇଛନ୍ତି । ପୁନଶ୍ଚ କୃତକର୍ମ ପାଇଁ ସେହି ବ୍ୟକ୍ତି ଯଦି ଅନୁତାପ ନ କରେ ତା' ହେଲେ ସେପରି କର୍ମ ତାଙ୍କ ମତରେ ଅନିଚ୍ଛାକୃତ କର୍ମ ଭୁଆଯାଏ । ଆରିଷ୍ଟଟଲଙ୍କର ଏହି ଅନଭିପ୍ରେତ କର୍ମ ଓ ଅନିଚ୍ଛାକୃତ କର୍ମ ମଧ୍ୟରେ ପାର୍ଥକ୍ୟ ସମ୍ବନ୍ଧରେ ଦାର୍ଶନିକମାନଙ୍କର ମତ ପ୍ରଭେଦ ଦେଖାଯାଏ । ଧାର୍ମିକ ସକ୍ରେଟିସ କହିଛନ୍ତି ମନୁଷ୍ୟ କେତେବେଳେ ହେଲେ ଜ୍ଞାତାନୁସାରେ ଅସତ୍ କର୍ମ କରି ନ ଥାଏ । କିନ୍ତୁ ଆରିଷ୍ଟଟଲଙ୍କ ମତରେ ଅନେକ ସମୟରେ ମନୁଷ୍ୟ ଜାଣିଶୁଣି ଅସତ୍ କର୍ମ କରିଥାଏ । ପୁନଶ୍ଚ ସଂଯମ ଓ ଅସଂଯମ ଆଲୋଚନା ପ୍ରସଙ୍ଗରେ ଆରିଷ୍ଟଟଲଙ୍କ ମତ ଏହି ଯେ ଯଦି କେହି ଅସତ୍‌କର୍ମ କରେ ସେ ସେହି କର୍ମକୁ ସମ୍ପୂର୍ଣ୍ଣ ଅଜ୍ଞାତସାରରେ କରିଥାଏ । କିନ୍ତୁ ତାଙ୍କର ଏହି ମତ ଗ୍ରହଣଯୋଗ୍ୟ ନୁହେଁ । କାରଣ ଅସଂଯତ ବ୍ୟକ୍ତି ଇଚ୍ଛାକୃତ ଭାବରେ ଅସତ୍ କର୍ମ କରିଥାଏ । ମହାତ୍ମା ବ୍ୟକ୍ତିଙ୍କ ପ୍ରସଙ୍ଗରେ ଆରିଷ୍ଟଟଲ କହିଛନ୍ତି ଯେ ଏହି ବ୍ୟକ୍ତି ପର ଉପକାର କରିବାରେ ସର୍ବଦା ଉଦ୍ୟତ; କିନ୍ତୁ ଉପକାର ଗ୍ରହଣରେ ଅତ୍ୟ କୁଣ୍ଠିତ ହୋଇଥାନ୍ତି ପୁନଶ୍ଚ ସେହି ମହତ୍ମା ବ୍ୟକ୍ତି ଉପକୃତ ହେଲେ ଅଧିକତର ପ୍ରତିଉପକାର କରିଥାନ୍ତି । ଲାଭଜନକ ଓ ପ୍ରୟୋଜନୀୟ ଦ୍ରବ୍ୟ ଅପେକ୍ଷା ସୁନ୍ଦର ଓ ଅପ୍ରୟୋଜନୀୟ ଦ୍ରବ୍ୟ ତାଙ୍କର କାମ୍ୟ । ମହାତ୍ମା ବ୍ୟକ୍ତିଙ୍କର ବୈଶିଷ୍ଟ୍ୟ :— ଧୀର ପଦକ୍ଷେପ, ଗମ୍ଭୀର ସ୍ୱର ଓ ସ୍ପଷ୍ଟ ଉଚ୍ଚାରଣ । କିନ୍ତୁ ଆରିଷ୍ଟଟଲଙ୍କ ଏହି ମତ ଆଧୁନିକ ମତାନୁସାରେ ଅଗ୍ରାହ୍ୟକର ।

## ନ୍ୟାୟପରାୟଣତା :—

ଆରିଷ୍ଟଟଲ ତାଙ୍କ **ଏଥିକସ୍** ଗ୍ରନ୍ଥରେ ନ୍ୟାୟପରାୟଣତା ସମ୍ବନ୍ଧରେ ବିସ୍ତାରିତ ଆଲୋଚନା କରିଛନ୍ତି । ନ୍ୟାୟପରାୟଣତା ଅର୍ଥ ଦୁଇପ୍ରକାର । (୧) ଯାହା

ଆଇନସଂଗତ ଏବଂ (୨) ଯାହା ସଙ୍ଗତ ଓ ସମାନ । ପ୍ରଥମେ ପ୍ରକାର ଅର୍ଥାତ୍ ଆଇନ-ସଙ୍ଗତ ନ୍ୟାୟପରାୟଣତା ସାଧାରଣ ବା ସାର୍ବଜନୀନ ଅଟେ । ଏହି ନ୍ୟାୟପରାୟଣତା ଅର୍ଥ ଆଇନ ଆନୁଗତ୍ୟ ଅଟେ । ଆଇନ ଅର୍ଥ ରାଷ୍ଟ୍ରୀୟ ଆଇନ ଅଟେ । ପ୍ଲେଟୋଙ୍କ ପରି ଆରିଷ୍ଟଟଲ ସମସ୍ତ ଜୀବନ ଉପରେ ରାଷ୍ଟ୍ରର ପ୍ରଭାବ ସ୍ୱୀକାର କରିଛନ୍ତି ।

ଆରିଷ୍ଟଟଲଙ୍କ ମତରେ ବିଶେଷ ନ୍ୟାୟପରାୟଣତା ଦ୍ୱିବିଧ ଅଟେ । (୧) ବଣ୍ଟନମୂଳକ ନ୍ୟାୟପରାୟଣତା, (୨) ସଂଶୋଧନାତ୍ମକ ନ୍ୟାୟପରାୟଣତା । ବଣ୍ଟନ-ମୂଳକ ନ୍ୟାୟପରାୟଣତା ଅନୁସାରେ ରାଷ୍ଟ୍ରର ପ୍ରତ୍ୟେକ ନାଗରିକକୁ ତାର ଗୁଣାନୁସାରେ ଯଥାର୍ଥ ପ୍ରାପ୍ୟ ଦିଆ ହେବ ।

ସଂଶୋଧନାତ୍ମକ ନ୍ୟାୟପରାୟଣତା ପୁନଶ୍ଚ ଦ୍ୱିବିଧ ଅଟେ । [୧] ସ୍ୱେଚ୍ଛାକୃତ ବିଷୟ ସମ୍ପର୍କିତ, [୨] ଅନଭିପ୍ରେତ ବିଷୟ ସମ୍ପର୍କିତ । ଏହି ଦୁଇ ପ୍ରକାରର ବିଶେଷ ନ୍ୟାୟପରାୟଣତା ବ୍ୟତୀତ ଆରିଷ୍ଟଟଲ ବାଣିଜ୍ୟ ବା ବିନିମୟ ସମ୍ପର୍କିତ ତୃତୀୟ ଏକ ପ୍ରକାର ନ୍ୟାୟପରାୟଣତା କଥା ଉଲ୍ଲେଖ କରିଛନ୍ତି ।

ଆରିଷ୍ଟଟଲଙ୍କ ମତରେ ନ୍ୟାୟପରାୟଣତା ଅର୍ଥ ଅନ୍ୟାୟ କର୍ମ କରିବା ଓ ଅନ୍ୟାୟ ବ୍ୟବହାର ପାଇବାର ମଧ୍ୟଅବସ୍ଥା । ତାଙ୍କ ମତରେ ଅନ୍ୟକୁ ତାର ଯଥାର୍ଥ ପ୍ରାପ୍ୟ ଦେବା ଓ ନିଜର ଯଥାର୍ଥ ପ୍ରାପ୍ୟ ପାଇବା ହିଁ ନ୍ୟାୟପରାୟଣତା । କିନ୍ତୁ ନିଜର ଯଥାର୍ଥ ପ୍ରାପ୍ୟ ଅପେକ୍ଷା ଅନ୍ୟକୁ ତାର ପ୍ରାପ୍ୟର ଅଧିକ ଦେବା ତାଙ୍କ ମତରେ ନ୍ୟାୟ ନୁହେଁ । ଆରିଷ୍ଟଟଲଙ୍କ ମତରେ ଅନ୍ୟାନ୍ୟ ପୁଣ୍ୟ ଯେପରି ମଧ୍ୟମ ପନ୍ଥା ଅବସ୍ଥା କଥା ବୁଝାଏ, ନ୍ୟାୟପରାୟଣତା ସେହିପରି ମଧ୍ୟଅବସ୍ଥାକୁ ବୁଝାଏ ନାହିଁ । ନ୍ୟାୟପରାୟଣତାକୁ ଏକ ପ୍ରକାର ମଧ୍ୟଅବସ୍ଥା ବୁଝାଯାଇପାରେ, କାରଣ ଏହା ଦୁଇ ଚରମର ଅତିରିକ୍ତ ପ୍ରାପ୍ତିର ମଧ୍ୟଅବସ୍ଥାକୁ ବୁଝାଇଥାଏ ।

ଆରିଷ୍ଟଟଲ ଅନ୍ୟାୟ କର୍ମର ବିଭିନ୍ନ ବିଭାଗ ସ୍ୱୀକାର କରିଛନ୍ତି । ତାଙ୍କ ମତରେ ଯେଉଁ କର୍ମ ଅନ୍ୟର କ୍ଷତି କରେ, କିନ୍ତୁ କ୍ଷତିର କଥା ଆଗରୁ ଜଣା ନ ଥାଏ ଏବଂ କ୍ଷତି କରିବାର ଉଦ୍ଦେଶ୍ୟ ନେଇ କାମଟି କରି ହୋଇ ନ ଥାଏ ବା ଯେଉଁ କର୍ମ ସାଧାରଣତଃ କ୍ଷତିକର ନୁହେଁ, ସେହି କର୍ମ ଏବଂ ଯେଉଁ କର୍ମ ଅନ୍ୟର କ୍ଷତି କରେ ଏବଂ କ୍ଷତି କଥା ଆଗରୁ ଜଣା ଥାଏ ବା କ୍ଷତି କରିବାର ଉଦ୍ଦେଶ୍ୟ ନେଇ କର୍ମ କରିହୁଏ, ଅର୍ଥାତ୍ ଯେଉଁ କର୍ମ ସାଧାରଣତଃ ଅନ୍ୟର କ୍ଷତି ଘଟାଏ ସେହି କର୍ମ ଏକ ପର୍ଯ୍ୟାୟଭୁକ୍ତ ନୁହେଁ ।

## ପୁଣ୍ୟ :—

ବୁଦ୍ଧି ବୃତ୍ତି ଅନୁଯାୟୀ ପ୍ରାଜ୍ଞିକ ପୁଣ୍ୟକୁ ଦୁଇ ଭାଗରେ ବିଭକ୍ତ କରାଯାଇଛି । ମନୁଷ୍ୟର ଦ୍ୱିବିଧ ବୁଦ୍ଧି ବୃତ୍ତି ଅଛି । (୧) ବୈଜ୍ଞାନିକ ବୃତ୍ତି— ଏହା ସାହାଯ୍ୟରେ ଅନିବାର୍ଯ୍ୟ, ଅପରିହାର୍ଯ୍ୟ ଓ ନିଶ୍ଚିତ ବିଷୟ ଆଲୋଚନା କରାଯାଏ । (୨) ବିଚାରବୃତ୍ତି- ଏହା ଅନିଶ୍ଚିତ ବିଷୟ ସମ୍ବନ୍ଧରେ ଆଲୋଚନା କରିଥାଏ । ବୈଜ୍ଞାନିକ ବୃତ୍ତିଯୁକ୍ତ ଜ୍ଞାନ ସ୍ୱତଃ ପ୍ରମାଣ । ଏହି ଜ୍ଞାନ ବୋଧିଗମ୍ୟ ଯୁକ୍ତି ସାହାଯ୍ୟରେ ଲାଭ କରାଯାଏ । ବୋଧିଗମ୍ୟ ଯୁକ୍ତିକୁ 'ଔପପତ୍ତିକ ପ୍ରଜ୍ଞା' କୁହାଯାଏ । ଏହି 'ପ୍ରଜ୍ଞା' ଅଧିବିଦ୍ୟା, ଗଣିତବିଦ୍ୟା ଓ ପ୍ରାକୃତିକ ବିଜ୍ଞାନ ସମ୍ବନ୍ଧରେ ଆଲୋଚନା କରେ । ବିଚାର ବୃତ୍ତି ଯୁକ୍ତ ପ୍ରାଜ୍ଞିକ ପୁଣ୍ୟ ବ୍ୟକ୍ତି କଲ୍ୟାଣ ସାଧନ କରେ । ଏହାକୁ ବ୍ୟବହାରିକ ପ୍ରଜ୍ଞା କୁହାଯାଏ । ପୁନଶ୍ଚ ପରିବାର ସମ୍ପୃକ୍ତ ପ୍ରାଜ୍ଞିକ ପୁଣ୍ୟକୁ ଅର୍ଥଶାସ୍ତ୍ର କୁହାଯାଏ ଓ ରାଷ୍ଟ୍ର ସମ୍ପୃକ୍ତ ପ୍ରାଜ୍ଞିକ ପୁଣ୍ୟକୁ ରାଷ୍ଟ୍ରବିଜ୍ଞାନ କୁହାଯାଏ । ବ୍ୟାପକ ଅର୍ଥରେ ଏହି ରାଷ୍ଟ୍ରବିଜ୍ଞାନକୁ ଦୁଇ ଭାଗରେ ଭାଗ କରାଯାଇଛି । (୧) ଆଇନ ପ୍ରଣୟନ ବିଭାଗ, (୨) ଶାସନ ବିଭାଗ । ଏହି ବିଶ୍ଳେଷଣ ଅନୁସାରେ ବ୍ୟକ୍ତିର କଲ୍ୟାଣ ଓ ରାଷ୍ଟ୍ରର କଲ୍ୟାଣ ସମ୍ପୃକ୍ତ ପୁଣ୍ୟ ହିଁ ବ୍ୟାବହାରିକ ପ୍ରଜ୍ଞା ଅନ୍ତର୍ଗତ । ମୂଳତଃ ବ୍ୟାବହାରିକ ପ୍ରଜ୍ଞାର ଅର୍ଥ ହେଉଛି ମନୁଷ୍ୟ ପକ୍ଷରେ ଶୁଭ ବା ଅଶୁଭ ସମ୍ବନ୍ଧରେ କୌଣସି ନିୟମାନୁସାରେ ଯଥାର୍ଥ କର୍ମପ୍ରବଣତା ।

ଆରିଷ୍ଟଟଲଙ୍କ ମତରେ ବ୍ୟାବହାରିକ ପ୍ରଜ୍ଞା ବ୍ୟାବହାରିକ ଦ୍ୱିପଦ ଅନୁମାନ ସହିତ ଯୁକ୍ତ ଅଟେ ।

ସକ୍ରେଟିସ୍ ପୁଣ୍ୟକୁ ବିଚକ୍ଷଣତା ସହିତ ସମାନ କରିଛନ୍ତି । କିନ୍ତୁ ଆରିଷ୍ଟଟଲଙ୍କ ମତରେ ଏହା ଆଂଶିକ ସତ୍ୟ । ବିଚକ୍ଷଣତା ବ୍ୟତୀତ ପୁଣ୍ୟ ସମ୍ବନ୍ଧୀୟ କଳ୍ପନା ଅସମ୍ଭବ ହେଲେ ହେଁ ପୁଣ୍ୟ ଯେ ବିଚକ୍ଷଣତା ଏହା କହିବା ଯୁକ୍ତିସଙ୍ଗତ ନୁହେଁ । ଆରିଷ୍ଟଟଲଙ୍କ ମତରେ ବିଚକ୍ଷଣତା ପୁଣ୍ୟ ନୁହେଁ; କିନ୍ତୁ ପୁଣ୍ୟ ମଧ୍ୟରେ ବିଚକ୍ଷଣତା ବିଦ୍ୟମାନ । ଅତଏବ ବିଚକ୍ଷଣତା ଏବଂ ଚତୁରତା ଏହି ଦୁହିଁଙ୍କର ଅର୍ଥ ସମାନ ନୁହେଁ । ଚତୁରତା ଦ୍ୱାରା ମନୁଷ୍ୟ ଯେ କୌଣସି ଉଦ୍ଦେଶ୍ୟ ସାଧନର ପ୍ରକୃଷ୍ଟ ଉପାୟ ଆବିଷ୍କାର କରିପାରେ । ଜଣେ ଦୁଷ୍ଟ ମନୁଷ୍ୟ ତାର ଦୁଷ୍ଟ ଉଦ୍ଦେଶ୍ୟ ସିଦ୍ଧି ପାଇଁ ଚତୁରତା ଦ୍ୱାରା ହିଁ ଉପାୟ ଆବିଷ୍କାର କରିଥାଏ । ସେହିପରି ବ୍ୟକ୍ତିକୁ ଆରିଷ୍ଟଟଲଙ୍କ ମତରେ ଚତୁର ବ୍ୟକ୍ତି କୁହାଯାଇପାରେ; କିନ୍ତୁ ବିଚକ୍ଷଣ ବ୍ୟକ୍ତି କହିଲେ ଭୁଲ ହେବ । ବିଚକ୍ଷଣତା ସାହାଯ୍ୟରେ ମନୁଷ୍ୟ ସତ୍ ଉଦ୍ଦେଶ୍ୟ ସାଧନର ଉପାୟ ନିର୍ଣ୍ଣୟ କରିଥାଏ । ସେଥିପାଇଁ ଆରିଷ୍ଟଟଲଙ୍କ ମତରେ ବିଚକ୍ଷଣତା ଏକ ପ୍ରକାର ନୈତିକ ପୁଣ୍ୟ ଅଟେ ।

**ଇଉଡ଼ିମିୟାନ ଏଥିକସ୍** ଗ୍ରନ୍ଥରେ ଆରିଷ୍ଟଟଲ କହିଛନ୍ତି ଯେ ସକ୍ରେଟିସଙ୍କ ମତରେ ପୁଣ୍ୟ ହିଁ ଜ୍ଞାନର ପ୍ରକାର ମାତ୍ର । ଅର୍ଥାତ୍ ନ୍ୟାୟପରାୟଣତାର ଜ୍ଞାନ ଏବଂ ନ୍ୟାୟ ପରାୟଣ ହେବା ଏକ କଥା । କିନ୍ତୁ ଆରିଷ୍ଟଟଲ ସକ୍ରେଟିସଙ୍କ ଏ ଯୁକ୍ତିକୁ ମାନି ନାହାନ୍ତି । ତାଙ୍କ ମତରେ ନ୍ୟାୟପରାୟଣତା ଜ୍ଞାନ ରହିଲେ ଯେ ମନୁଷ୍ୟ ନ୍ୟାୟପରାୟଣ ହେବ ଏକଥା ଠିକ୍ ନୁହେଁ । ଉଦାହରଣ ସ୍ୱରୂପ— ଶରୀର ସମ୍ବନ୍ଧରେ ଜ୍ଞାନ ଥିଲା ବ୍ୟକ୍ତି ବୀର ନୁହେଁ । ଆରିଷ୍ଟଟଲ ତାଙ୍କର **ନିକୋମାକିୟାନ ଏଥିକସ୍** ଗ୍ରନ୍ଥରେ ଏ ବିଷୟରେ ଆଲୋଚନା କରି କହିଛନ୍ତି ଯେ ଯେଉଁ ବ୍ୟକ୍ତି ଡାକ୍ତରଙ୍କ ନିର୍ଦ୍ଦେଶ ଶୁଣି ଔଷଧ ମାନେ ନାହିଁ ଯେପରି, ସେହିପରି ଯେଉଁ ବ୍ୟକ୍ତି ନ୍ୟାୟପରାୟଣତା ବିଷୟରେ ଜ୍ଞାନ ରଖେ ଅଥଚ ନ୍ୟାୟପରାୟଣ ହେବାକୁ ଚେଷ୍ଟା କରେ ନାହିଁ; ସେ ମଧ୍ୟ ସେହିପରି ।

ଆରିଷ୍ଟଟଲଙ୍କ ମତରେ ସୁଖ ଭଲ ନୁହେଁ କି ଖରାପ ମଧ୍ୟ ନୁହେଁ । କେତେଗୁଡ଼ିଏ ସୁଖ ସହିତ କେତେକ ଅପକର୍ମ ଜଡ଼ିତ ଥିବାରୁ ତାକୁ ଭଲ ବୋଲି କୁହାଯାଇ ପାରେନା । କିନ୍ତୁ ତା'ବୋଲି ସମସ୍ତ ସୁଖ ଯେ ମନ୍ଦ ଏକଥା ମଧ୍ୟ କହିବା ଠିକ୍ ନୁହେଁ । ଭଲ କାର୍ଯ୍ୟ ସହିତ ସଂଯୁକ୍ତ ସୁଖ ଭଲ ଓ ମନ୍ଦ କାର୍ଯ୍ୟ ସହିତ ସଂଯୁକ୍ତ ସୁଖ ମନ୍ଦ ଅଟେ ।

ଦୁଃଖର ଅଭାବ ସୁଖ ନୁହେଁ । ସୁଖ ଏକ ଭାବ ଅବସ୍ଥା । ଶାସ୍ତ୍ର ପଠନ ସୁଖ, ଇନ୍ଦ୍ରିୟ ସୁଖର ଗନ୍ଧ ଏବଂ କୌଣସି ରୂପ ଓ ଶବ୍ଦ ଜନିତ ସୁଖ ଓ ପ୍ରତ୍ୟାଶା, ସ୍ମୃତି ସଂଯୁକ୍ତ ସୁଖ ସହିତ କୌଣସି ପ୍ରାକ୍ ଦୁଃଖର ସମ୍ବନ୍ଧ ନାହିଁ । ଭଲ ବ୍ୟକ୍ତିଙ୍କର ସୁଖ ଯଥାର୍ଥ ସୁଖ ଅଟେ ।

ଆରିଷ୍ଟଟଲଙ୍କ ସୁଖ ସମ୍ବନ୍ଧୀୟ ଆଲୋଚନାରେ ମଧ୍ୟପନ୍ଥା ବା ମଧ୍ୟଅବସ୍ଥା ଅନୁସରଣ କରିଛନ୍ତି । ସେ ଇଉଡ଼ୋକ୍ସସ୍ (Eudoxus) ଙ୍କ ଭଳି ସବୁ ସୁଖକୁ ଯେପରି ସୁଖ କହି ନାହାନ୍ତି ସେପରି ସ୍ପିଉସିପସ (Speusippus) ଙ୍କ ଭଳି ସବୁ ସୁଖକୁ ମନ୍ଦ ବୋଲି ମଧ୍ୟ କହିନାହାନ୍ତି ।

ଆରିଷ୍ଟଟଲ ତାଙ୍କ **ଏଥିକସ୍** ଗ୍ରନ୍ଥରେ ବନ୍ଧୁତ୍ୱ ବିଷୟରେ ସମ୍ୟକ୍ ଆଲୋଚନା କରିଛନ୍ତି । ତାଙ୍କ ମତରେ ବନ୍ଧୁତ୍ୱ ଏକ ଅନ୍ୟତମ ପୁଣ୍ୟ ଏବଂ ଜୀବନର ଅପରିହାର୍ଯ୍ୟ ବସ୍ତୁ ଗୁଡ଼ିକ ମଧ୍ୟରେ ଅନ୍ୟତମ । ମନୁଷ୍ୟର ଜୀବନକାଳ ମଧ୍ୟରେ ବିଭିନ୍ନ ପର୍ଯ୍ୟାୟରେ ଏହି ବନ୍ଧୁତ୍ୱର ପ୍ରୟୋଜନ ହୋଇଥାଏ । ତାଙ୍କ ମତରେ ମନୁଷ୍ୟ ସ୍ୱଭାବତଃ ନିଜକୁ ବେଶୀ ଭଲପାଏ । ଅଧିକାଂଶ ଲୋକ ସମ୍ମାନଲାଭ ଓ ପ୍ରତିଷ୍ଠାଲାଭକୁ

ମଧ୍ୟ ଭଲ ପାଇଥାନ୍ତି । କିନ୍ତୁ ଭଲ ଲୋକମାନେ ପୁଣ୍ୟକର୍ମ ଅନୁଷ୍ଠାନ ନିମନ୍ତେ ଅତ୍ୟନ୍ତ ଆଗ୍ରହ ପ୍ରକାଶ କରିଥାନ୍ତି । ଯେଉଁ ବ୍ୟକ୍ତି ଅପରକୁ ବନ୍ଧୁ ଜ୍ଞାନରେ ଧନଦାନ ବା ସମ୍ମାନିତ କରନ୍ତି ସେ ପୁଣ୍ୟ ଅର୍ଜ୍ଜନ କରିଥାନ୍ତି । ଆରିଷ୍ଟଟଲଙ୍କ ମତରେ ଜଣେ ବ୍ୟକ୍ତି ସହିତ ତାର ବନ୍ଧୁର ସମ୍ବନ୍ଧ ନିଜ ସହିତ ନିଜର ସମ୍ପର୍କ ଭଳି । ନିଜକୁ ଏପରି ବିସ୍ତୃତ କରିବା ଉଚିତ ଯାହା ଦ୍ୱାରା କି ବନ୍ଧୁ ନିଜର ଅଂଶ ହୋଇ ପାରିବ ଏବଂ ତାର ସୁଖ ଦୁଃଖ, ଜୟ ପରାଜୟ ନିଜର ସୁଖ, ଦୁଃଖ ଓ ଜୟ ପରାଜୟ ବୋଲି ମନେ ହେବ ।

ଆରିଷ୍ଟଟଲ ବନ୍ଧୁତ୍ୱକୁ କେତେଗୋଟି ଶ୍ରେଣୀରେ ଭାଗ କରିଛନ୍ତି । ( ) ପ୍ରୟୋଜନ ବନ୍ଧୁତ୍ୱ । ଯଥା :— ବ୍ୟବହାରିକ ବନ୍ଧୁତ୍ୱ । ଏହି କ୍ଷେତ୍ରରେ ଜଣେ ବ୍ୟକ୍ତି ନିଜସ୍ୱ ପ୍ରୟୋଜନ ଦୃଷ୍ଟିରୁ ଅନ୍ୟ ସହିତ ବନ୍ଧୁତ୍ୱ ସ୍ଥାପନ କରିଥାନ୍ତି । (୨) ସୁଖଦ ବନ୍ଧୁତ୍ୱ ସଙ୍ଗସୁଖ ଲାଭ ନିମନ୍ତେ ଏହି ପ୍ରକାର ବନ୍ଧୁତ୍ୱ କରାଯାଇଥାଏ । ସାଧାରଣତଃ ଯୁବଗୋଷ୍ଠୀ ଏହି ପ୍ରକାର ବନ୍ଧୁତ୍ୱ କାମନା କରିଥାନ୍ତି । ଉପରୋକ୍ତ ଦ୍ୱିବିଧ ବନ୍ଧୁତ୍ୱ କ୍ଷଣସ୍ଥାୟୀ । କାରଣ ବନ୍ଧୁତ୍ୱର ପ୍ରୟୋଜନ ଲୁପ୍ତ ହେବା କ୍ଷଣି ବନ୍ଧୁତ୍ୱ ଲୁପ୍ତ ହୋଇଥାଏ । (୩) ସତ୍ ମନୁଷ୍ୟର ବନ୍ଧୁତ୍ୱ ଏହି ପ୍ରକାର ବନ୍ଧୁତ୍ୱ ସର୍ବଶ୍ରେଷ୍ଠ, ସ୍ଥାୟୀ ଓ ଏହା ଏକ 'ପୁଣ୍ୟ' ଅଟେ ।

ଆରିଷ୍ଟଟଲଙ୍କ ମତରେ ବନ୍ଧୁତ୍ୱ ଏକ ମାନସିକ ଅଭ୍ୟାସ । ଏହା ସାଧାରଣ ଅନୁଭୂତ ନୁହେଁ । ଈଶ୍ୱରଙ୍କ ପକ୍ଷରେ ବନ୍ଧୁତ୍ୱ ନିଃଷ୍ପ୍ରୟୋଜନ । କାରଣ ତାଙ୍କର ଶୁଭ ପର-ନିର୍ଭରଶୀଳ ନୁହେଁ । ମାନବଜାତି ପକ୍ଷରେ ବନ୍ଧୁତ୍ୱ ପ୍ରୟୋଜନ, କାରଣ ପ୍ରତ୍ୟେକ ମନୁଷ୍ୟର ଶୁଭାଶୁଭ ଅନ୍ୟ ଉପରେ ନିର୍ଭରଶୀଳ ଅଟେ ।

ପୂର୍ବରୁ କୁହାଯାଇଅଛି ଯେ ଆନନ୍ଦକୁ ଆରିଷ୍ଟଟଲ ମାନବଜୀବନର ପରମ ପୁରୁଷାର୍ଥ ବୋଲି କହିଛନ୍ତି । ତାଙ୍କ ମତରେ ବିଶୁଦ୍ଧଚିନ୍ତା ହିଁ ପରିପୂର୍ଣ୍ଣ ଆନନ୍ଦର ଆଧାର । ବିଶୁଦ୍ଧଚିନ୍ତାର ଚରମତମ ବିଷୟବସ୍ତୁ ହିଁ ଈଶ୍ୱର । **ଇଉଡିମିୟାନ** ଗ୍ରନ୍ଥରେ ଆରିଷ୍ଟଟଲ କହିଛନ୍ତି ଯେ ଈଶ୍ୱର ପୂଜନ ଓ ମନନ ଆଦର୍ଶ ଜୀବନର ଅପରିହାର୍ଯ୍ୟ ଅଙ୍ଗ ଏବଂ ପରିପୂର୍ଣ୍ଣ ଆନନ୍ଦର ଆଧାର ଅଟେ । ଅତଏବ ତାଙ୍କ ମତରେ ନୀତି ଏ ଧର୍ମ ଅବଚ୍ଛିନ୍ନ ସଙ୍ଗୀ ଅଟେ ।

ନୈତିକ ଜୀବନରେ ବିଶୁଦ୍ଧଚିନ୍ତା ସମ୍ବନ୍ଧରେ ଆରିଷ୍ଟଟଲଙ୍କ ମତର ପ୍ରଭାବ ପରବର୍ତ୍ତୀ ଯୁଗର ଖ୍ରୀଷ୍ଟିୟ ଦାର୍ଶନିକ ଗ୍ରନ୍ଥରେ ବିଶେଷତଃ ସେଣ୍ଟ ଟମାସ ଆକ୍ୱାଇନାସଙ୍କ ଗ୍ରନ୍ଥରେ ପରିଲକ୍ଷିତ ହୁଏ । ସେଣ୍ଟ ଟମାସ ଆକ୍ୱାଇନାସଙ୍କର ସ୍ୱର୍ଗୀୟ ଦର୍ଶନ ଆରିଷ୍ଟଟଲଙ୍କ ବିଶୁଦ୍ଧଚିନ୍ତାର ହିଁ ଅନ୍ୟ ଏକ ନାମାନ୍ତର ଅଟେ ।

# ସପ୍ତମ ଅଧ୍ୟାୟ

## ଆରିଷ୍ଟଟଲଙ୍କ ରାଷ୍ଟ୍ରତତ୍ତ୍ୱ

ଆରିଷ୍ଟଟଲଙ୍କ ମତରେ ରାଷ୍ଟ୍ର ଅର୍ଥ ଗ୍ରୀକ୍ ନଗର ରାଷ୍ଟ୍ର । ରାଷ୍ଟ୍ରର ମୁଖ୍ୟ ଉଦ୍ଦେଶ୍ୟ ମାନବର କଲ୍ୟାଣ ସାଧନ । ( The state comes into existence originating in the bare needs of life and continuing in existende for the sake of good life. ) ଅର୍ଥାତ୍ ଜୀବନ ଧାରଣର ଆବଶ୍ୟକ ନିମିତ୍ତ ଓ ସତ୍ ଜୀବନର ଉଦ୍ଦେଶ୍ୟ ସାଧନ ନିମିତ୍ତ ରାଷ୍ଟ୍ରର ପ୍ରୟୋଜନ ଅପରିହାର୍ଯ୍ୟ । ମନୁଷ୍ୟର ବିଭିନ୍ନ ପ୍ରୟୋଜନ ଓ ବାସନା ଚରିତାର୍ଥ ନିମିତ୍ତ ରାଷ୍ଟ୍ରର ଅସ୍ତିତ୍ୱ ଆବଶ୍ୟକ । ରାଷ୍ଟ୍ର ପ୍ରକୃତ ମନୁଷ୍ୟର ସମଷ୍ଟି, ସେହି କାରଣ ନିମିତ୍ତ ମନୁଷ୍ୟ ଓ ଖାଦ୍ୟର ସମ୍ବନ୍ଧ ସନ୍ଧି ମୂଳକାସ୍ଥ ଅଟେ ।

ମନୁଷ୍ୟର ଦୈନନ୍ଦିନ ଜୀବନର ପ୍ରୟୋଜନାର୍ଥେ ପରିବାର ଆବଶ୍ୟକ । ଯେତେବେଳେ କେତେଗୁଡ଼ିଏ ପରିବାର ଏକତ୍ର ବସବାସ କରନ୍ତି ତାହା ଗ୍ରାମ ନାମରେ ଅଭିହିତ ହୁଏ । ଏହି ଗ୍ରାମ କେତେଗୁଡ଼ିଏ ପରିବାରର ପ୍ରୟୋଜନ ନିମିତ୍ତ ଗଠିତ ହୋଇଥାଏ ଏବଂ ଯେତେବେଳେ ଅନେକ ପରିବାରର ସମଷ୍ଟି ଏକତ୍ରିତ ହୋଇ ସ୍ୱୟଂ ସମ୍ପୂର୍ଣ୍ଣ ସମାଜ ଗଠନ କରନ୍ତି ତାହା ରାଷ୍ଟ୍ର ନାମରେ ଅଭିହିତ ହୁଏ । ଆରିଷ୍ଟଟଲଙ୍କ ମତରେ ରାଷ୍ଟ୍ର ସହିତ ପରିବାରର ଗ୍ରାମର ପାର୍ଥକ୍ୟ କେବଳ ମାତ୍ରାଗତ ନ ହେବା ଗୁଣଗତ ହୋଇଥାଏ । ଏକମାତ୍ର ରାଷ୍ଟ୍ର ମଧ୍ୟରେ ହିଁ ନାଗରିକମାନେ ପରିପୂର୍ଣ୍ଣ ଅର୍ଥରେ ସତ୍ ଜୀବନ ଯାପନ କରିବା ସମ୍ଭବପର । ଯେହେତୁ ମନୁଷ୍ୟ ପକ୍ଷରେ ସତ୍ ଜୀବନ ସ୍ୱାଭାବିକ ଭାବେ କାମ୍ୟ, ଅତଏବ ରାଷ୍ଟ୍ର ଏକ ସ୍ୱାଭାବିକ ସମାଜ ଅଟେ । ରାଷ୍ଟ୍ର ଯେପରି ସ୍ୱାଭାବିକ ଗତିରେ ଗଢ଼ା ହୁଏ, ମନୁଷ୍ୟ ମଧ୍ୟ ସେହିପରି ସ୍ୱଭାବତଃ ଏକ ସାମାଜିକ ବା ରାଷ୍ଟ୍ରୀୟ ଜୀବ ହୋଇ ଜନ୍ମଗ୍ରହଣ କରିଅଛି । ମନୁଷ୍ୟର ଭାଷାର କ୍ଷମତା ସ୍ପଷ୍ଟ ଭାବରେ ପ୍ରମାଣ କରେ ଯେ ସାମାଜିକ ଜୀବନ ଯାପନ ନିମିତ୍ତ ପ୍ରକୃତି ମନୁଷ୍ୟ ସୃଷ୍ଟି କରିଅଛି । ଯେଉଁ ବ୍ୟକ୍ତି ସମାଜରେ ବାସ କରିପାରେ ନାହିଁ ବା ଯାହାର ସମାଜରେ ବାସକରିବା ପ୍ରୟୋଜନ ନାହିଁ ସେ ହୁଏତ ସ୍ୱୟଂ ସମ୍ପୂର୍ଣ୍ଣ ଈଶ୍ୱର ନହେଲେ ପଶୁ ଅଟେ ।

ପ୍ଲେଟୋ ଓ ଆରିଷ୍ଟଟଲ କହିଅଛନ୍ତି ଯେ ବ୍ୟକ୍ତି ଓ ପରିବାର ଉଭୟ ହିଁ ରାଷ୍ଟ୍ର ନିର୍ଭରଶୀଳ ଓ ରାଷ୍ଟ୍ର ମଧ୍ୟରେ ହିଁ ବ୍ୟକ୍ତିର ସତ୍ ଜୀବନ ଓ ଆନନ୍ଦ ଲାଭ ସମ୍ଭବ ଅଟେ ।

ଅତଏବ ଆରିଷ୍ଟଟଲ ଯେ ଜନକଲ୍ୟାଣ ରାଷ୍ଟ୍ରର ସର୍ବ ପ୍ରଥମ ପ୍ରଦର୍ଶକ ଏ ବିଷୟରେ କୌଣସି ସନ୍ଦେହ ନାହିଁ । ରାଷ୍ଟ୍ର ଏକ ସ୍ୱାଭାବିକ ସମାଜ ଏବଂ ଜନକଲ୍ୟାଣ ହିଁ ରାଷ୍ଟ୍ରର ଆଦର୍ଶ, ଆରିଷ୍ଟଟଲଙ୍କର ଏହି ମତ ଆଧୁନିକ ଯୁଗରେ ମଧ୍ୟ ସ୍ୱୀକୃତିଲାଭ କରିଅଛି ।

ପରିବାର ସମ୍ବନ୍ଧରେ ଆଲୋଚନା କରିବାକୁ ଯାଇ ଆରିଷ୍ଟଟଲ ପ୍ରଭୁ-ଭୃତ୍ୟର ସମ୍ପର୍କ ଓ ସମ୍ପତ୍ତି ଲାଭ ବିଷୟରେ କହିଛନ୍ତି । ଆରିଷ୍ଟଟଲଙ୍କ ମତରେ 'ଦାସତ୍ୱ' ସ୍ୱାଭାବିକ ବିଷୟ ଅଟେ । ଜନ୍ମରୁ ହିଁ କେତେକ ବ୍ୟକ୍ତି ଦାସତ୍ୱ କରିବା ନିମନ୍ତେ ଉଦ୍ଦିଷ୍ଟ ଥିବା ସ୍ଥଳେ ଅନ୍ୟ କେତେକ ବ୍ୟକ୍ତି ପ୍ରଭୁତ୍ୱ କରିବା ନିମନ୍ତେ ଉଦ୍ଦିଷ୍ଟ ହୋଇଥାଆନ୍ତି । ଆରି-ଷ୍ଟଟଲଙ୍କ ମତରେ ସବୁ ମନୁଷ୍ୟର ଶାରୀରିକ ଓ ମାନସିକ କ୍ଷମତା ସମାନ ନୁହେଁ । ମନୁଷ୍ୟର ଏହି ପ୍ରକାର ବୈଷମ୍ୟ ଜନ୍ମଗତ ଅଟେ । ତେବେ ଆରିଷ୍ଟଟଲ ଏ କଥା ମଧ୍ୟ କହିଛନ୍ତି ଯେ ଦାସ ଉପରେ ପ୍ରଭୁର ଅତ୍ୟାଚାର ଅନୁଚିତ ଅଟେ ।

ଆରିଷ୍ଟଟଲଙ୍କ ମତରେ ସମ୍ପତ୍ତି ଲାଭ ନିମନ୍ତେ ଦୁଇଟି ସୁନିର୍ଦ୍ଦିଷ୍ଟ ଉପାୟ ଅଛି । ତାହା ନିମ୍ନରେ ପ୍ରଦତ୍ତ ହୋଇଛି ।

(୧) ପଶୁ ଚାରଣ, ଶିକାର, କୃଷିକର୍ମ ପ୍ରଭୃତି ଉପାୟ ଦ୍ୱାରା ମନୁଷ୍ୟ ଜୀବନର ପ୍ରୟୋଜନୀୟ ସାମଗ୍ରୀ ଆହରଣ ସମ୍ପତ୍ତି ଲାଭର ସ୍ୱାଭାବିକ ଉପାୟ ଅଟେ । ମନୁଷ୍ୟର ପ୍ରୟୋଜନ ତାର ଆହରଣର ସୀମା ନିର୍ଦ୍ଧାରଣ କରିଥାଏ । ଅର୍ଥାତ୍ ମନୁଷ୍ୟର ପ୍ରୟୋଜନ ଅନୁସାରେ ହିଁ ସମ୍ପତ୍ତିଲାଭର ଚେଷ୍ଟା କରିବା ଉଚିତ ।

(୨) ବିନିମୟ ପଦ୍ଧତି :—ଆରିଷ୍ଟଟଲ ଏହି ପଦ୍ଧତିକୁ ସମର୍ଥନ କରିଅଛନ୍ତି । ଏହି ପଦ୍ଧତିରେ ଗୋଟିଏ ଦ୍ରବ୍ୟର ଯଥାର୍ଥ ବ୍ୟବହାରଠାରୁ ସ୍ୱତନ୍ତ୍ର ଭାବରେ ବ୍ୟବହାର କରାଯାଏ । ଅର୍ଥାତ୍ ଦ୍ରବ୍ୟର ଯଥାର୍ଥ ବ୍ୟବହାରର ଅର୍ଥ ସେହି ଦ୍ରବ୍ୟ ସାଧାରଣତଃ ମନୁଷ୍ୟର ଯେଉଁ ପ୍ରୟୋଜନରେ ଆସେ ତାକୁ ହିଁ ବୁଝାଇଥାଏ । କିନ୍ତୁ ଯଦି ଗୋଟିଏ ଦ୍ରବ୍ୟ ବିନିମୟରେ ଅନ୍ୟ ଏକ ଦ୍ରବ୍ୟ କିଣାଯାଏ ତା'ହେଲେ ତାହା ଦ୍ରବ୍ୟଟିର ଯଥାର୍ଥ ବ୍ୟବହାରଠାରୁ ସ୍ୱତନ୍ତ୍ର କୌଣସି ବ୍ୟବହାର ବୋଲି ମାନିବାକୁ ହେବ । ଯେହେତୁ ବିନିମୟ ପଦ୍ଧତି ଦ୍ୱାରା ମନୁଷ୍ୟ ତା'ର ଜୀବନର ପ୍ରୟୋଜନୀୟ ସାମଗ୍ରୀ ଆହରଣ କରିପାରେ, ସେହିହେତୁ ଆରିଷ୍ଟଟଲ ବିନିମୟ ପଦ୍ଧତିକୁ ସମ୍ପତ୍ତିଲାଭର ସ୍ୱାଭାବିକ ଉପାୟ ବୋଲି ଉଲ୍ଲେଖ କରିଛନ୍ତି । ଉପରୋକ୍ତ ଦୁଇଟି ଉପାୟ ବ୍ୟତୀତ ଆରିଷ୍ଟଟଲ ସମ୍ପତ୍ତି ଲାଭର ଏକ ତୃତୀୟ ପଦ୍ଧତି ବିଷୟରେ କହିଅଛନ୍ତି । ଏହା ସମ୍ପତ୍ତିଲାଭର ଅସ୍ୱାଭାବିକ ଉପାୟ ଅଟେ । ଏହାକୁ ଅର୍ଥ ବିନିଯୋଗ ପଦ୍ଧତି ଆଖ୍ୟା ଦେଇଛନ୍ତି । ଆରିଷ୍ଟଟଲ

ବାକ୍ୟମୟ ପଦ୍ଧତିର ପ୍ରଶଂସା କରୁଥିବା ସ୍ଥଳେ ଅର୍ଥ ବାଣିଯୋଗ ପଦ୍ଧତିକୁ ନିନ୍ଦା କରି-ଅଛନ୍ତି । ମହୁ ଜନମାନଙ୍କର ସୁଧ ଲଗାଣ ଅଥ ବିନିଯୋଗକୁ ସେ ଶାସ୍ତି ଯୋଗ୍ୟ ଅପରାଧ ବୋଲି କହିଅଛନ୍ତି ।

ପ୍ଲେଟୋ ଆଦର୍ଶ ରାଷ୍ଟ୍ରରେ ଯେଉଁ ସବୁ ପରିବର୍ତ୍ତନ ପ୍ରସ୍ତାବନା କରିଅଛନ୍ତି ଆରିଷ୍ଟଟଲ ସେ କଥାର ପକ୍ଷପାତି ନୁହନ୍ତି । ଉଦାହରଣ ସ୍ୱରୂପ :—ପ୍ଲେଟୋ ଅଭିଭାବକ ଶ୍ରେଣୀର ସନ୍ତାନ ମାନଙ୍କ ନିମନ୍ତେ ସାଧାରଣ ରକ୍ଷଣାଳୟ ବ୍ୟବସ୍ଥା ଉଲ୍ଲେଖ କରିଥିବା ସ୍ଥଳେ ଆରିଷ୍ଟଟଲ ଏହି ମତ ପ୍ରତ୍ୟାଖ୍ୟାନ କରିଅଛନ୍ତି । ତାଙ୍କ ମତରେ ସମସ୍ତଙ୍କର ସନ୍ତାନ ସମାନ ଏବଂ ସମସ୍ତଙ୍କର ସନ୍ତାନ ପ୍ରକୃତରେ କାହାର ସନ୍ତାନ ନୁହେଁ । ସନ୍ତାନର ଲାଳନ ପାଳନ ନିମନ୍ତେ ସନ୍ତାନର ପିତାମାତା ହିଁ ଦାୟୀ । ଏହାଦ୍ୱାରା ସନ୍ତାନର ଯଥାର୍ଥ କଲ୍ୟାଣ ସାଧିତ ହୋଇଥାଏ । ପ୍ଲେଟୋ ରାଷ୍ଟ୍ରର ଐକ୍ୟ ଉପରେ ଗୁରୁତ୍ୱ ଦେବାସ୍ଥଳେ ଆରିଷ୍ଟଟଲ ବ୍ୟକ୍ତି ଉପରେ ହିଁ ଗୁରୁତ୍ୱ ଦେଇଛନ୍ତି । ତାଙ୍କ ମତରେ ଆନନ୍ଦଲାଭ ନିମନ୍ତେ ରାଷ୍ଟ୍ର ଉଦ୍ଦିଷ୍ଟ ଅଟେ । କିନ୍ତୁ ରାଷ୍ଟ୍ରର ଆନନ୍ଦ ଯଥାର୍ଥ ହିଁ ବ୍ୟକ୍ତିର ଆନନ୍ଦ ଅଟେ । ବ୍ୟକ୍ତିର ଆନନ୍ଦ ବ୍ୟତୀତ ରାଷ୍ଟ୍ରର ଆନନ୍ଦ ନ ରହିବାହିଁ ସ୍ୱାଭାବିକ ।

ପ୍ଲେଟୋଙ୍କ ମତରେ ନିର୍ଲୋଭ ଓ ସମ୍ପତ୍ତିହୀନ ଶ୍ରେଣୀର ଲୋକମାନେ ହିଁ ରାଷ୍ଟ୍ରର ଅଭିଭାବକ ବା ଶାସକ ନିମନ୍ତେ ଯୋଗ୍ୟ ଅଟନ୍ତି । ପ୍ଲେଟୋଙ୍କ ମତରେ ଅଭିଭାବକମାନେ ସମ୍ପତ୍ତି ଭୋଗ କରିପାରିବେ ନାହିଁ । କିନ୍ତୁ ଆରିଷ୍ଟଟଲ ଏହି ଉକ୍ତିକୁ ସମର୍ଥନ କରିନାହାନ୍ତି । ଆରିଷ୍ଟଟଲଙ୍କର ମତରେ ସମ୍ପତ୍ତି ଭୋଗ ସୁଖଦାୟକ ଅଟେ । ଅଭିଭାବକମାନେ ଏହି ସୁଖରୁ ବଞ୍ଚିତ ହେବାର କୌଣସି ସଙ୍ଗତ କାରଣ ନାହିଁ । ରାଷ୍ଟ୍ରର ସବୁ ସମ୍ପତ୍ତି ଓ ସମ୍ପଦ ରାଷ୍ଟ୍ରାଧୀନ ହେବା ବାଞ୍ଛନୀୟ ବୋଲି ପ୍ଲେଟୋଙ୍କ ଅଭିମତ । କିନ୍ତୁ ଆରିଷ୍ଟଟଲ ଏହି ମତ ସମର୍ଥନ କରି ନାହାନ୍ତି । ତାଙ୍କ ମତରେ ସମ୍ପତ୍ତି ନାଗରିକର ଏକ ଅଧିକାର ଅଟେ । ସେ କହିଛନ୍ତି ନାଗରିକମାନଙ୍କୁ ଉପଯୁକ୍ତ ଶିକ୍ଷା ଦେଲେ ସେମାନେ କେବେହେଲେ ପ୍ରୟୋଜନ ଅତିରିକ୍ତ ସମ୍ପଦ ଓ ସମ୍ପତ୍ତି ଅର୍ଜନରେ ମନ ଦେବେ ନାହିଁ, ଅତଏବ ସମ୍ପଦ ଓ ସମ୍ପତ୍ତିକୁ ରାଷ୍ଟ୍ରାଧୀନ କରିବାର ପ୍ରୟୋଜନ ନାହିଁ ।

## ସରକାର ଓ ଶାସନତନ୍ତ୍ର :—

ଆରିଷ୍ଟଟଲ ଏଥେନ୍ସ ପ୍ରଚଳିତ ଗଣତନ୍ତ୍ରର ଅଭିଜ୍ଞତା ଭିତ୍ତିରେ ନାଗରିକ ମାନଙ୍କର ଅଧିକାର କଥା କହିଛନ୍ତି ତାଙ୍କ ମତରେ ସମସ୍ତ ନାଗରିକମାନେ ହିଁ ପର୍ଯ୍ୟାୟକ୍ରମେ ଶାସକ ଏବଂ ଶାସିତ ହେବେ । ବିଧାନସଭାରେ ଏବଂ ନ୍ୟାୟିକ ବିଧାନ ପରିଷଦରେ ଅଂଶ ଗ୍ରହଣ କରିବା ନାଗରିକମାନଙ୍କର ନ୍ୟୂନତମ ଅଧିକାର ଅଟେ । ଏହି ଅଧିକାର ଅପହରଣାର୍ଥ

ଅଟେ । ସେଥିପାଇଁ ଆରିଷ୍ଟଟଲ ପ୍ଲେଟୋଙ୍କର ଶ୍ରେଣୀବିଭାଗର କାରିଗର ଓ ମିସ୍ତ୍ରୀମାନଙ୍କୁ ନାଗରିକ ବୋଲି ସ୍ୱୀକାର କରିନାହାନ୍ତି । କାରଣ ଆରିଷ୍ଟଟଲଙ୍କ ମତରେ ଏହି କାରିଗର ଶ୍ରେଣୀର ଯଥେଷ୍ଟ ଅବକାଶ ନ ଥିବାରୁ ସେମାନେ ବିଧାନସଭା ଓ ଏବଂ ନ୍ୟାୟର ବିଧାନ ଦାନ କ୍ଷେତ୍ରରେ ଅଂଶ ଗ୍ରହଣ କରିପାରିବେ ନାହିଁ ।

ଆରିଷ୍ଟଟଲ ଜନସ୍ୱାର୍ଥ ପରିଚାଳିତ ଓ ଆତ୍ମସ୍ୱାର୍ଥ ପରିଚାଳିତ ସରକାର ମଧ୍ୟରେ ପ୍ରଭେଦ ଦର୍ଶାଇଛନ୍ତି । ଜନସ୍ୱାର୍ଥ ପରିଚାଳିତ ଶୁଭ ସରକାର ଓ ଆତ୍ମସ୍ୱାର୍ଥ ପରିଚାଳିତ ସରକାର ଅଶୁଭ ସରକାର ଅଟେ । ଆରିଷ୍ଟଟଲଙ୍କ ମତରେ ଜନକଲ୍ୟାଣ ପରିଚାଳିତ ସରକାର ତିନିବିଧ; ଯଥା:— (୧) ରାଜତନ୍ତ୍ର (୨) ଅଭିଜାତ ତନ୍ତ୍ର (୩) ଜନତନ୍ତ୍ର । ଶାସନ କ୍ଷମତା ଏକ ବ୍ୟକ୍ତି ଉପରେ ନ୍ୟସ୍ତ ରହିଲେ ତାହାକୁ ରାଜତନ୍ତ୍ର କୁହାଯାଏ । ଯଦି ଶାସନ କ୍ଷମତା କେତେକ ଅଭିଜାତ ବ୍ୟକ୍ତିଙ୍କ ଉପରେ ନ୍ୟସ୍ତ ହୁଏ, ତାହାକୁ ଅଭିଜାତତନ୍ତ୍ର କୁହାଯାଏ । ପୁନଶ୍ଚ ଶାସନ କ୍ଷମତା ବହୁଜନଙ୍କ ଉପରେ ନ୍ୟସ୍ତ ହେଲେ, ସେ ବ୍ୟବସ୍ଥାକୁ ଜନତନ୍ତ୍ର କୁହାଯାଏ । ଯଦି ରାଜା ଶାସକ ଆତ୍ମସ୍ୱାର୍ଥ ଚରିତାର୍ଥ ନିମନ୍ତେ ଶାସନ ପରି-ଚାଳନା କରନ୍ତି ତାହେଲେ ସେହି ଶାସନକୁ 'ସ୍ୱୈରତନ୍ତ୍ର' କୁହାଯାଏ । ଯଦି କେତେକ ଅଭିଜାତ ବ୍ୟକ୍ତି ନିଜ ସ୍ୱାର୍ଥରେ ସରକାର ପରିଚାଳନା କରନ୍ତି ତାହେଲେ ତାହାକୁ ଧନିକ-ତନ୍ତ୍ର କୁହାଯାଏ । ପୁନଶ୍ଚ ଯଦି ବହୁଜନ ନିଜ ସ୍ୱାର୍ଥରେ ଶାସନ ପରିଚାଳନା କରନ୍ତି ତା ହେଲେ ଗଣତନ୍ତ୍ର ସୃଷ୍ଟି ହୋଇଥାଏ । ଆରିଷ୍ଟଟଲଙ୍କ ମତରେ ରାଜତନ୍ତ୍ର, ଅଭିଜାତତନ୍ତ୍ର ଓ ଜନତନ୍ତ୍ର ଶୁଭ ସରକାର ହେବା ସ୍ଥଳେ ସ୍ୱୈରତନ୍ତ୍ର ଧନିକତନ୍ତ୍ର ଓ ଗଣତନ୍ତ୍ର ଅଶୁଭ ସରକାର ଅଟେ । ଜନତନ୍ତ୍ର ହେଉଛି ମଧ୍ୟବିତ୍ତର ଶାସନ । ମଧ୍ୟବିତ୍ତମାନେ ଧନୀ ଓ ଗରିବ ଶ୍ରେଣୀର ମଧ୍ୟବର୍ତ୍ତୀ ଅଟନ୍ତି । ଧନୀ କେବେହେଁ ଗରିବକୁ ବିଶ୍ୱାସ କରେ ନାହିଁ ଏବଂ ଗରିବ ମଧ୍ୟ କେବେହେଲେ ଧନୀକୁ ବିଶ୍ୱାସ କରେ ନାହିଁ । କିନ୍ତୁ ଏହି ଉଭୟ ଶ୍ରେଣୀ ମଧ୍ୟବିତ୍ତକୁ ହିଁ ବିଶ୍ୱାସ କରିଥାନ୍ତି । ସେଥିପାଇଁ ଆରିଷ୍ଟଟଲ ଧନୀର ଶାସନ ଏବଂ ଗରିବର ଶାସନ ଅପେକ୍ଷା ମଧ୍ୟବିତ୍ତର ଶାସନକୁ ସମର୍ଥନ କରିଅଛନ୍ତି । ଆରିଷ୍ଟଟଲଙ୍କ ମତରେ ଯଦି କୌଣସି ରାଷ୍ଟ୍ରରେ ଏପରି ଏକ ବ୍ୟକ୍ତି ଥାଆନ୍ତି ଯେ କି ସବୁ ବିଷୟରେ ସମସ୍ତଙ୍କଠାରୁ ଶ୍ରେଷ୍ଠ ହେବେ ସେହି ବ୍ୟକ୍ତି ହିଁ ସ୍ୱାଭାବିକ ରାଜା ଓ ଶାସକ ହେବେ; କିନ୍ତୁ ଏପରି ଏପରି ସର୍ବ ଶ୍ରେଷ୍ଠ ବ୍ୟକ୍ତି ଏ ଜଗତରେ ଦୁର୍ଲଭ ଅଟନ୍ତି ଅତଏବ ସେପରି ଶାସକ ଯେତେ ଭଲ ହେଲେ ମଧ୍ୟ ସହଜ ଲଭ୍ୟ ନୁହେଁ । ଆରିଷ୍ଟଟଲଙ୍କ ମତରେ ଅଭିଜାତତନ୍ତ୍ର ହିଁ ଶ୍ରେଷ୍ଠ ଶାସନତନ୍ତ୍ର ଅଟେ । କାରଣ ଅଭିଜାତ ଶାସକମାନେ ନିଜର ଯୋଗ୍ୟତା ବଳରେ ଅନ୍ୟକୁ ଶାସନ କରନ୍ତି ଓ ଶାସନ କରିବା ସମୟରେ ଅନ୍ୟର ସ୍ୱାଧୀନତାରେ ହସ୍ତକ୍ଷେପ କରନ୍ତି କରନ୍ତି ନାହିଁ । ଆରିଷ୍ଟଟଲ ଏ କଥା ମଧ୍ୟ କହିଛନ୍ତି ଯେ ଅଭିଜାତ ଶାସକମାନଙ୍କର ଶାସନତନ୍ତ୍ର ପ୍ରତି ଆନୁଗତ୍ୟ ଶାସନ ପରିଚାଳନାର ଯୋଗ୍ୟତା ଓ ନୈତିକ ସାଧୁତା

ରହିବା ଏକାନ୍ତ ବାଞ୍ଛନୀୟ । କାରଣ ନ୍ୟାୟଶାସନରେ କେବେହେଁ ବିପ୍ଲବ ସୃଷ୍ଟି ହୋଇପାରେ ନାହିଁ । ବିଭିନ୍ନ ସରକାର ଏବଂ ବିପ୍ଳବ ସମ୍ବନ୍ଧୀୟ ଆଲୋଚନାରେ ଆରିସ୍ଟଟଲଙ୍କର ରାଜନୈତିକ ସଚେତନତା ଯେ କେତେ ଉଚ୍ଚକୋଟୀର ତାହା ଜଣାଯାଏ । ଆରିଷ୍ଟଟଲ କହିଛନ୍ତି ଶାସକମାନେ ଯେପରି ଶାସନ ବ୍ୟବସ୍ଥାର ସୁଯୋଗ ନେଇ ପ୍ରଚୁର ଧନ ସମ୍ପତ୍ତିର ମାଲିକ ହୋଇ ନ ପାରନ୍ତି ସେ କଥା ଲକ୍ଷ୍ୟ କରାଯିବା ଉଚିତ । ଉଚ୍ଚ ରାଜକର୍ମଚାରୀମାନେ ସେମାନଙ୍କର ପଦର ସୁଯୋଗ ନେଇ କ୍ଷମତାର ଅପପ୍ରୟୋଗ ଯେପରି ନ କରନ୍ତି, ସେ ବିଷୟରେ ମଧ୍ୟ ନାଗରିକମାନଙ୍କୁ ସଚେତନ ହେବାକୁ ହେବ ।

ପୁନଶ୍ଚ ତାଙ୍କ ମତରେ କୌଣସି ସରକାର ଅଧୀନରେ ସବୁ ନାଗରିକ ଯଦି ନ୍ୟାୟ ବିଚାର ପାଆନ୍ତି ଏବଂ ଶାସକମାନେ ଶାସନ କ୍ଷମତା ଅପପ୍ରୟୋଗ କରି ନ୍ୟାୟ ଭାବରେ ଅର୍ଥ ସଂଗ୍ରହ ନ କରନ୍ତି ଓ ଉଚ୍ଚ ରାଜକର୍ମଚାରୀମାନେ ଯଦି ସତ୍, ଦକ୍ଷ ଏବଂ ଅନୁଗତ ହୁଅନ୍ତି ତାହେଲେ ରାଷ୍ଟ୍ରରେ ବିପ୍ଳବ ଅସମ୍ଭବ । କିନ୍ତୁ ରାଜକର୍ମଚାରୀମାନେ ଯଦି ବିପରୀତ ଆଚରଣ କରନ୍ତି ତାହେଲେ ନାଗରିକମାନଙ୍କ ମଧ୍ୟରେ ଅସନ୍ତୋଷ ପୁଞ୍ଜିଭୂତ ହୋଇ ବିପ୍ଳବର କ୍ଷେତ୍ର ପ୍ରସ୍ତୁତ ହୋଇଥାଏ ।

କିନ୍ତୁ ପ୍ଲେଟୋ ତାଙ୍କର The Statesman ଗ୍ରନ୍ଥରେ କହିଛନ୍ତି, ରାଜତନ୍ତ୍ର ହେଉଛି ସର୍ବଶ୍ରେଷ୍ଠ ସରକାର । ଅଳ୍ପ ଲୋକଙ୍କ ଦ୍ୱାରା ପରିଚାଳିତ ସରକାର ଦ୍ୱିତୀୟ ଶ୍ରେଷ୍ଠ ଓ ବହୁଜନ ଦ୍ୱାରା ପରିଚାଳିତ ସରକାର ନିକୃଷ୍ଟତମ ଏବଂ ଯଦି ଆମ୍ଭେମାନେ ବିଶୃଙ୍ଖଳ ସରକାରଙ୍କ କଥା ଆଲୋଚନାକରୁ ତେବେ ଜଣଙ୍କ ଦ୍ୱାରା ପରିଚାଳିତ ସରକାର ବା ସ୍ୱୈରତନ୍ତ୍ର ନିକୃଷ୍ଟତମ ଅଟେ । ପୁନଶ୍ଚ ଅଳ୍ପ କେତେ ଲୋକଙ୍କ ଦ୍ୱାରା ପରିଚାଳିତ ସରକାର ଦ୍ୱିତୀୟ ନିକୃଷ୍ଟତମ ଏବଂ ବହୁଜନ ପରିଚାଳିତ ସରକାର ସବୁଠାରୁ କମ୍ ମନ୍ଦ ଅଟେ । ଏହି ଆଲୋଚନା ଭିତ୍ତିରେ ପ୍ଲେଟୋ କହିଛନ୍ତି ଯେ ବହୁଜନଙ୍କ ଦ୍ୱାରା ପରିଚାଳିତ ସରକାର ବା ଗଣତନ୍ତ୍ର ସୁଶୃଙ୍ଖଳ ସରକାର ମାନଙ୍କ ମଧ୍ୟରେ ନିକୃଷ୍ଟତମ ଓ ବିଶୃଙ୍ଖଳ ସରକାରମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଅଟେ । କିନ୍ତୁ Republic ଗ୍ରନ୍ଥରେ ପ୍ଲେଟୋ କହିଛନ୍ତି ଯେ "The perfect state is the Aristocratic state", ଅର୍ଥାତ୍ ଅଭିଜାତତନ୍ତ୍ର ରାଷ୍ଟ୍ର ହିଁ ଶ୍ରେଷ୍ଠ ରାଷ୍ଟ୍ର । ଏ ବିଷୟରେ ଆରିଷ୍ଟଟଲଙ୍କ ସହିତ ପ୍ଲେଟୋଙ୍କ ମତବାଦ ସାଦୃଶ୍ୟ ରହିଛି । କାରଣ ଆରିଷ୍ଟଟଲଙ୍କ ମତରେ ଅଭିଜାତତନ୍ତ୍ର ରାଷ୍ଟ୍ରରେ ବିଜ୍ଞ ଦାର୍ଶନିକମାନେ ହିଁ ଶାସକ ଥିବାରୁ ସେହି ରାଷ୍ଟ୍ର ଆଦର୍ଶ ରାଷ୍ଟ୍ରରେ ହିଁ ପରିଣତ ଲାଭ କରିଥାଏ ।

ଆଦର୍ଶ ରାଷ୍ଟ୍ର :— ଆଦର୍ଶ ରାଷ୍ଟ୍ର ସମ୍ବନ୍ଧରେ ଆରିଷ୍ଟଟଲଙ୍କ ମତବାଦ ନିମ୍ନରେ ଦର୍ଶାହୋଇଛି ।

(୧) ଆରିଷ୍ଟଟଲଙ୍କ ମତରେ ଆଦର୍ଶ ରାଷ୍ଟ୍ର ଆକାରରେ ବେଶୀ ବୃହତ୍ ବା କ୍ଷୁଦ୍ର ହେବା ବାଞ୍ଛନୀୟ ନୁହେଁ । ରାଷ୍ଟ୍ର ଯଦି ବଡ ହୁଏ ତାହେଲେ ଦକ୍ଷ ଶାସନ ପରିଚାଳନା ଅସମ୍ଭବ । ସେହିପରି ରାଷ୍ଟ୍ର କ୍ଷୁଦ୍ରାୟତନ ହେଲେ ତାହା ପର ନିର୍ଭରଶୀଳ ହୋଇଥାଏ । ତାଙ୍କ ମତରେ ରାଷ୍ଟ୍ର ସ୍ୱୟଂ ସମ୍ପୂର୍ଣ୍ଣ ହେବା ଉଚିତ ।

(୨) ଆରିଷ୍ଟଟଲଙ୍କ ମତରେ ଆଦର୍ଶ ରାଷ୍ଟ୍ରର ନାଗରିକମାନଙ୍କର ଜୀବନ ସଂସ୍କୃତିମୟ ହେବା ଉଚିତ । ଏହି ସଂସ୍କୃତିମୟ ଜୀବନ ଯାପନ ନିମନ୍ତେ ନାଗରିକମାନଙ୍କର ଅବକାଶ ରହିବା ପ୍ରୟୋଜନ । ଯେଉଁ ରାଷ୍ଟ୍ରରେ ସାଂସ୍କୃତିକ ଜୀବନ ଉପେକ୍ଷିତ ସେ ରାଷ୍ଟ୍ର ଆରିଷ୍ଟଟଲଙ୍କ ମତରେ ନିନ୍ଦନୀୟ ରାଷ୍ଟ୍ର ଅଟେ । ପୁନଶ୍ଚ ଏହା ମଧ୍ୟ ଆରିଷ୍ଟଟଲ କହିଛନ୍ତି ଯେ ବାଣିଜ୍ୟବ୍ୟବସାୟ ମଧ୍ୟ ନିନ୍ଦନୀୟ ଅଟେ । ମୂଳତଃ କହିବାକୁ ଗଲେ ତାଙ୍କ ମତରେ ନାଗରିକ କେବଳ ଜୀବନଯାପନ ନିମନ୍ତେ ପ୍ରାଣ ଧାରଣର ପ୍ରଚେଷ୍ଟାରେ ସମସ୍ତ ଶକ୍ତି ଅପଚୟ କରିବ ନାହିଁ । ସେମାନଙ୍କର ଏପରି ଆର୍ଥିକ ଅବସ୍ଥା ରହିବା ଉଚିତ ଯାହାଦ୍ୱାରା ପ୍ରୟୋଜନୀୟ କାର୍ଯ୍ୟ କଲା ପରେ ସଂସ୍କୃତି ଚର୍ଚ୍ଚା ନିମନ୍ତେ ଯଥେଷ୍ଟ ଅବକାଶ ରହିବ । ଆଦର୍ଶ ରାଷ୍ଟ୍ରର ନାଗରିକମାନେ ଚରମ ଦାରିଦ୍ର୍ୟ ଓ ଅତ୍ୟଧିକ ଐଶ୍ୱର୍ଯ୍ୟର ମଧ୍ୟବର୍ତ୍ତୀ ଅବସ୍ଥାରେ ହିଁ ଜୀବନ ଯାପନ କରିବା ବାଞ୍ଛନୀୟ । ରାଷ୍ଟ୍ର ଅତିରିକ୍ତ ସମ୍ପଦ ସଞ୍ଚୟ କରିବା ଅନୁଚିତ । ପ୍ରୟୋଜନର ଅତିରିକ୍ତ ଦ୍ରବ୍ୟ ରାଷ୍ଟ୍ର ମଧ୍ୟରେ ନ ରଖି ରପ୍ତାନି କରାଯିବା ଉଚିତ ।

(୩) ଆରିଷ୍ଟଟଲଙ୍କ ମତରେ ସମାଜରେ କୃଷକ ଓ ଶ୍ରମିକମାନଙ୍କର ପ୍ରୟୋଜନ ଅଛି ; କିନ୍ତୁ ଏହି ଶ୍ରେଣୀର ନାଗରିକମାନଙ୍କର ନାଗରିକ ଅଧିକାର ରହିବ ନାହିଁ । ଉପରୋକ୍ତ ଦୁଇଟି ଶ୍ରେଣୀ ବ୍ୟତୀତ ତୃତୀୟ ଏକ ଶ୍ରେଣୀ ପରିପୂର୍ଣ୍ଣ ଭାବରେ ନାଗରିକ ଅଧିକାର ଯୋଗ୍ୟ ଅଟେ । ଏମାନେ ଯୌବନାବସ୍ଥାରେ ଯୋଦ୍ଧା, ମଧ୍ୟ ବୟସରେ ଶାସକ ଏବଂ ବୃଦ୍ଧ ବୟସରେ ଯାଜକ ହେବେ । ପ୍ରତ୍ୟେକ ନାଗରିକଙ୍କର ଦୁଇଖଣ୍ଡ ଜମି ରହିବ । ଏକ ଖଣ୍ଡ ନଗର ନିକଟରେ ଓ ଅନ୍ୟ ଖଣ୍ଡଟି ରାଷ୍ଟ୍ରର ସୀମାନ୍ତରେ ରହିବା ବାଞ୍ଛନୀୟ । ଏହାଦ୍ୱାରା ସବୁ ନାଗରିକ ଦେଶରକ୍ଷା ନିମନ୍ତେ ଉତ୍ସାହିତ ହେବେ ଓ ରାଷ୍ଟ୍ର ସୀମାନ୍ତର ନିରାପତ୍ତା ରକ୍ଷା କରାଯାଇ ପାରିବ ।

(୪) ପ୍ଲେଟୋ ପରି ଆରିଷ୍ଟଟଲ ନାଗରିକମାନଙ୍କର ଶିକ୍ଷା ଉପରେ ଅଧିକ ଗୁରୁତ୍ୱ ଦେଇଛନ୍ତି । ପୁନଶ୍ଚ ପ୍ଲେଟୋଙ୍କ ପରି ଶିକ୍ଷା ରାଷ୍ଟ୍ରର ଦାୟିତ୍ୱ ବୋଲି ମଧ୍ୟ କହିଛନ୍ତି । ଆରିଷ୍ଟଟଲ ମତରେ ଶିକ୍ଷା ଦ୍ୱିବିଧ ହେବା ବାଞ୍ଛନୀୟ । ସେହି

ସମ୍ପର୍କୀୟ ଶିକ୍ଷା ଓ ଅନ୍ୟ ସମ୍ପର୍କୀୟ ଶିକ୍ଷା । ଶାରୀରିକ ଶିକ୍ଷା ବ୍ୟତୀତ ଅନ୍ୟ କ ଶିକ୍ଷା ଅସମ୍ଭବ । ଅନ୍ୟ କ ଶିକ୍ଷା ମଧ୍ୟରେ ଆରିଷ୍ଟଟଲ ନୈତିକ ଶିକ୍ଷାକୁ ବେଶୀ ପ୍ରାଧାନ୍ୟ ଦେଉଛନ୍ତି । ଭଲ ସୈନିକ କିମ୍ବା ଭଲ ଯାଜକ ହେବାକୁ ଗଲେ ନୈତିକ ଶିକ୍ଷା ଅପରିହାର୍ଯ୍ୟ ଅଟେ । ଆରିଷ୍ଟଟଲ ସନ୍ତାନଧାରଣୀ ଜନନୀମାନଙ୍କର ବ୍ୟାୟାମ ଦରକାର ଆବଶ୍ୟକ ବୋଲି ଉଲ୍ଲେଖ କରିଛନ୍ତି । ତାଙ୍କ ମତରେ ସୁସ୍ଥ ଜନନୀ ହିଁ ସୁସ୍ଥ ସନ୍ତାନ ଜନ୍ମ ଦେବାକୁ ସକ୍ଷମ ଅଟେ । ସନ୍ତାନମାନଙ୍କର ସୁସ୍ଥ ଚରିତ୍ର ଗଠନ ନିମନ୍ତେ ଗଳ୍ପ ଛଳରେ ନୈତିକ ଶିକ୍ଷା ଏକାନ୍ତ ପ୍ରୟୋଜନ ।

ଆରିଷ୍ଟଟଲଙ୍କର Politics ପୁସ୍ତକଟି ଅସମାପ୍ତ ହୋଇ ରହିଥିବାରୁ ଉଚ୍ଚ ଶିକ୍ଷା ସମ୍ପର୍କୀୟ ମତ ବିଷୟରେ କୌଣସି ଧାରଣା ମିଳେ ନାହିଁ । କାରିଗରି ଶିକ୍ଷା ଓ ପ୍ରୟୋଜନ କେନ୍ଦ୍ରିକ ଶିକ୍ଷା ସମ୍ବନ୍ଧରେ ପ୍ଳେଟୋ ଓ ଆରିଷ୍ଟଟଲଙ୍କର ବିଚାର ହେଲେ ବିଶେଷ ପାର୍ଥକ୍ୟ ନ ଥିବାର ଜଣାଯାଏ । ଉଭୟେ ଶିକ୍ଷାର ଉଚ୍ଚ ଆଦର୍ଶ ସମ୍ବନ୍ଧରେ କହିଛନ୍ତି । ଉଭୟଙ୍କର ମତରେ ବ୍ୟକ୍ତି ଜୀବନର ପରିପୂର୍ଣ୍ଣତା ନିମନ୍ତେ ଶିକ୍ଷା ଗ୍ରହଣ କରିବା ଉଚିତ । ଆରିଷ୍ଟଟଲଙ୍କର ମତରେ ଆଦର୍ଶ ରାଷ୍ଟ୍ରର ନାଗରିକ ରୂପରେ ଏହି ଶିକ୍ଷା ଲାଭ ସମ୍ଭବ । ନାଗରିକମାନେ ଯଥାର୍ଥ ଶିକ୍ଷା ନ ପାଇଲେ ଆଦର୍ଶ ରାଷ୍ଟ୍ର ଗଢ଼ିବା ଉଦ୍ଦେଶ୍ୟ ନୁହେଁ । ନାଗରିକ ମାନଙ୍କର କଲ୍ୟାଣ ସାଧନ ହିଁ ରାଷ୍ଟ୍ରର ମୁଖ୍ୟ ଉଦ୍ଦେଶ୍ୟ । ଶାନ୍ତି ସ୍ଥାପନ ନିମନ୍ତେ ବହିଃଶତ୍ରୁ ସହିତ ଯୁଦ୍ଧ ଉଚିତ ଅଟେ । ବ୍ୟକ୍ତି ଓ ରାଷ୍ଟ୍ର ଉଭୟେ ପରିପୂର୍ଣ୍ଣ ଓ ସାର୍ଥକ ଜୀବନ ରୂପାୟନର ସାଧନା କରିବା ଏକାନ୍ତ ପ୍ରୟୋଜନ ଅଟେ । ବ୍ୟକ୍ତି ପକ୍ଷରେ ଯାହା ମହତ୍ତମ ରାଷ୍ଟ୍ର ପକ୍ଷରେ ମଧ୍ୟ ତାହା ମହତ୍ତମ ଅଟେ । ପ୍ଳେଟୋ ଓ ଆରିଷ୍ଟଟଲ ଉଭୟେ ସାମ୍ରାଜ୍ୟ ସୃଷ୍ଟିର ବିରୋଧୀ ଥିଲେ । ଆରିଷ୍ଟଟଲଙ୍କ ମତରେ ସ୍ୱୈରାଚାର ଶାସିତ ରାଷ୍ଟ୍ର ସବୁଠାରୁ ନିକୃଷ୍ଟ ଓ ନୀରାନନ୍ଦମୟ ରାଷ୍ଟ୍ର ଅଟେ ।

# ଅଷ୍ଟମ ଅଧ୍ୟାୟ

## ଲଳିତକଳା ସମ୍ପର୍କରେ ଆରିଷ୍ଟଟଲଙ୍କ ମତ

ସୌନ୍ଦର୍ଯ୍ୟର ତତ୍ତ୍ୱ :— ସୌନ୍ଦର୍ଯ୍ୟ ତତ୍ତ୍ୱ ସମ୍ବନ୍ଧରେ ଦାର୍ଶନିକ ପ୍ଲେଟୋ ଓ ଦାର୍ଶନିକ ଆରିଷ୍ଟଟଲ ଉଭୟେ ସ୍ୱ ସ୍ୱ ମତବାଦ ପ୍ରଚାର କରିଛନ୍ତି । ଆରିଷ୍ଟଟଲଙ୍କ ସୌନ୍ଦର୍ଯ୍ୟ ତତ୍ତ୍ୱ ସମ୍ବନ୍ଧରେ ଆଲୋଚନା କରିବାକୁ ଗଲେ ପ୍ରଥମେ ପ୍ଲେଟୋଙ୍କ ସୌନ୍ଦର୍ଯ୍ୟ ତତ୍ତ୍ୱର ଧାରଣାର ଅବତାରଣା ଆବଶ୍ୟକ ।

ପ୍ଲେଟୋଙ୍କ ମତରେ ସୌନ୍ଦର୍ଯ୍ୟ ଏକ ବସ୍ତୁଗତ ସତ୍ୟ । ସେ ତାଙ୍କର **ହିପ୍ପିୟାସ ମ୍ୟାଜର** (Hippias Major) ଓ **ସିମ୍ପୋସିୟମ** (Symposium) ଗ୍ରନ୍ଥ ଦୁଇଟିରେ କହିଛନ୍ତି ଯେ ଆଦର୍ଶ ସୌନ୍ଦର୍ଯ୍ୟରେ ଅଂଶ ଗ୍ରହଣ କରି ସୁନ୍ଦର ଜିନିଷ ସୁନ୍ଦର ହୋଇଅଛି । ଅତଏବ ସୌନ୍ଦର୍ଯ୍ୟର ସତ୍ୟତା ସମ୍ବନ୍ଧରେ କୌଣସି ପ୍ରଶ୍ନ ଆସି ନ ପାରେ ।

ସୌନ୍ଦର୍ଯ୍ୟ ସମ୍ପର୍କିତ ଏହି ମତବାଦରୁ ସୁନ୍ଦରର ମାତ୍ରାଭେଦ ଅନୁସିଦ୍ଧାନ୍ତ ରୂପେ ଗୃହୀତ ହୋଇଅଛି । ଆଦର୍ଶ ସୌନ୍ଦର୍ଯ୍ୟରେ ଅଂଶ ଗ୍ରହଣ କରି ସୁନ୍ଦର ଜିନିଷ ଯଦି ସୁନ୍ଦର ହୁଏ ତେବେ ଯେଉଁ ଜିନିଷ ଆଦର୍ଶ ସୌନ୍ଦର୍ଯ୍ୟର ଯେତେ ଅଂଶ ଗ୍ରହଣ କରିବ, ସେ ସେତେ ସୁନ୍ଦର ହେବ । ଏହି ବିଚାରରୁ ପ୍ଲେଟୋ **ହିପ୍ପିୟାସ ମ୍ୟାଜର** ଗ୍ରନ୍ଥରେ ସୌନ୍ଦର୍ଯ୍ୟ ସମ୍ବନ୍ଧରେ ସାପେକ୍ଷତାବାଦ ବୋଲି ପ୍ରଚାର କରିଛନ୍ତି । ତାଙ୍କ ମତରେ ସବୁଠାରୁ ସୁନ୍ଦର ମାଙ୍କଡ଼ ସୁନ୍ଦର ମନୁଷ୍ୟ ତୁଳନାରେ କୁତ୍ସିତ ଏବଂ ସୁନ୍ଦର ସୂପ ପାତ୍ର ସୁନ୍ଦରୀ ମାନବୀର ତୁଳନାରେ କୁତ୍ସିତ; ପୁନଶ୍ଚ ସୁନ୍ଦରୀ ମାନବୀ ମଧ୍ୟ ଦେବତାଙ୍କ ତୁଳନାରେ କୁତ୍ସିତ ଅଟେ । ବିଭିନ୍ନ ସୁନ୍ଦର ଦ୍ରବ୍ୟ ସମ୍ବନ୍ଧରେ ଏହିପ୍ରକାର ସାପେକ୍ଷତା ପ୍ରଯୁଜ୍ୟ ହେଲେହେଁ ଆଦର୍ଶ ସୌନ୍ଦର୍ଯ୍ୟ ସମସ୍ତ ପ୍ରକାରେ ସାପେକ୍ଷତା ଅତୀତ ଅଟେ । ପ୍ଲେଟୋଙ୍କ ମତରେ ଆଦର୍ଶ ସୌନ୍ଦର୍ଯ୍ୟ ନିତ୍ୟ ସୁନ୍ଦର ଓ ସେହି ସୌନ୍ଦର୍ଯ୍ୟ କେତେବେଳେ ହେଲେ କୁତ୍ସିତ ହେବାର ସମ୍ଭାବନା ନାହିଁ ।

ପୁନଶ୍ଚ ପ୍ଲେଟୋ କହିଛନ୍ତି ଯେ ଆଦର୍ଶ ସୌନ୍ଦର୍ଯ୍ୟ ଅର୍ଥ ବୋଲି ଏହା କୌଣସି ଇନ୍ଦ୍ରିୟଗ୍ରାହ୍ୟ ଜଡ଼ବସ୍ତୁ ନୁହେଁ । ଆଦର୍ଶ ସୌନ୍ଦର୍ଯ୍ୟ ଅତୀନ୍ଦ୍ରିୟ ଏବଂ ଅଜଡ଼ । ଯେ କୌଣସି ସୁନ୍ଦର ଦ୍ରବ୍ୟ ହିଁ ଇନ୍ଦ୍ରିୟଗ୍ରାହ୍ୟ ଅଟେ । ଅତୀନ୍ଦ୍ରିୟ ସୌନ୍ଦର୍ଯ୍ୟର ତୁଳନାରେ ଯେ କୌଣସି ସୁନ୍ଦର ଦ୍ରବ୍ୟ ନିକୃଷ୍ଟ ଅଟେ ।

ପ୍ଲେଟୋଙ୍କ ମତରେ ଆଦର୍ଶ ସୌନ୍ଦର୍ଯ୍ୟ ହିଁ ଆଦର୍ଶ କଲ୍ୟାଣ । କୌଣସି ସୁନ୍ଦର ଦ୍ରବ୍ୟ ଅକଲ୍ୟାଣକର ନୁହେଁ । ଯେ କୌଣସି ସୁନ୍ଦର ଦ୍ରବ୍ୟ ଆମ୍ଭମାନଙ୍କୁ ଇନ୍ଦ୍ରିୟ ସୁଖ ଦାନ କରିଥାଏ । କିନ୍ତୁ ଆଦର୍ଶ ସୌନ୍ଦର୍ଯ୍ୟ ଇନ୍ଦ୍ରିୟଗ୍ରାହ୍ୟ ନ ହେବାରୁ ଏହା ପକ୍ଷରେ ଇନ୍ଦ୍ରିୟ ସୁଖ ଦାନର ପ୍ରଶ୍ନ ଉଠି ନ ପାରେ । ପୁନଶ୍ଚ ପ୍ଲେଟୋଙ୍କ ମତରେ ପରିମିତ ଓ ସାମଞ୍ଜସ୍ୟ ସୌନ୍ଦର୍ଯ୍ୟ ଭିତ୍ତି ଅଟେ । ଯେଉଁଠାରେ ପରିମିତ ଓ ସାମଞ୍ଜସ୍ୟ ନାହିଁ ସେଠାରେ ସୌନ୍ଦର୍ଯ୍ୟ ନାହିଁ । ଏହି ପରିମିତ ଓ ସାମଞ୍ଜସ୍ୟ କେବଳ ମାତ୍ର ସୌନ୍ଦର୍ଯ୍ୟର ଭିତ୍ତି ନୁହେଁ, ପ୍ଲେଟୋଙ୍କ ମତରେ ଏହା କଲ୍ୟାଣର ମୂଳଭିତ୍ତି ମଧ୍ୟ ।

ଆରିଷ୍ଟଟଲଙ୍କ ମତରେ ଯାହା ଇନ୍ଦ୍ରିୟ ସୁଖକର ତାହା ସୁନ୍ଦର ନୁହେଁ । ଆରିଷ୍ଟଟଲ **ପ୍ରବ୍ଲେମାଟା** (Problemata) ଗ୍ରନ୍ଥରେ କାମନା ଦ୍ୱାରା ପ୍ରଭାବିତ ସୌନ୍ଦର୍ଯ୍ୟ ଓ ଯଥାର୍ଥ ସୌନ୍ଦର୍ଯ୍ୟ ମଧ୍ୟରେ ପାର୍ଥକ୍ୟ ଦର୍ଶାଇଛନ୍ତି ।

ସୌନ୍ଦର୍ଯ୍ୟ ସହିତ କଲ୍ୟାଣର ସମ୍ବନ୍ଧ ବିଷୟରେ ଆରିଷ୍ଟଟଲଙ୍କ ବକ୍ତବ୍ୟ ସ୍ପଷ୍ଟ ନୁହେଁ । **ରେଟୋରିକ୍** ଗ୍ରନ୍ଥରେ ଆରିଷ୍ଟଟଲ କହିଛନ୍ତି ଯେ 'ଯେଉଁ କଲ୍ୟାଣ ସୁଖଦାୟକ ତାହା ସୁନ୍ଦର", କାରଣ ଏହା କଲ୍ୟାଣ ଅଟେ । ଏହି କଥାରୁ ଜଣାଯାଏ ଯେ ସୁନ୍ଦର ଓ କଲ୍ୟାଣ ମଧ୍ୟରେ କୌଣସି ପ୍ରଭେଦ ନାହିଁ ।

ପୁନଶ୍ଚ **ମେଟାଫିଜିକସ୍** ଗ୍ରନ୍ଥରେ ଆରିଷ୍ଟଟଲ ସ୍ପଷ୍ଟ ଭାବରେ କହିଛନ୍ତି ଯେ କଲ୍ୟାଣ ଏବଂ ସୌନ୍ଦର୍ଯ୍ୟ ଏକ ନୁହେଁ । କାରଣ କଲ୍ୟାଣ ଆଚରଣ ସମ୍ବନ୍ଧରେ ପ୍ରଯୁଜ୍ୟ, କିନ୍ତୁ ସୌନ୍ଦର୍ଯ୍ୟ ଗତିହୀନ ବସ୍ତୁ ମଧ୍ୟରେ ମଧ୍ୟ ସମ୍ଭବ ଅଟେ । ଅର୍ଥାତ୍ ଆଚରଣ ହିଁ କେବଳ କଲ୍ୟାଣ ହୋଇପାରେ କିନ୍ତୁ ଗତିହୀନ ବସ୍ତୁର ମଧ୍ୟ ସୌନ୍ଦର୍ଯ୍ୟ ଥାଏ । (The goods and the beautiful are different for the former always implies conduct as its subject while the beautiful is found also in motionless things.

—*Metaphysics* 1078 a 31-2

ସୌନ୍ଦର୍ଯ୍ୟର ବର୍ଣ୍ଣନା ପ୍ରସଙ୍ଗରେ ଆରିଷ୍ଟଟଲ **ମେଟାଫିଜିକସ୍** ଗ୍ରନ୍ଥରେ କହିଛନ୍ତି ଯେ "ଶୃଙ୍ଖଳା, ସାମଞ୍ଜସ୍ୟ ଏବଂ ସ୍ପଷ୍ଟତା ସୌନ୍ଦର୍ଯ୍ୟର ମୁଖ୍ୟ ଆକାର ଅଟେ ।" (The chief forms of beauty are order, symmetry and definiteness) ।

ପୁନଶ୍ଚ **ପାୟେଟିକସ୍** ଗ୍ରନ୍ଥରେ ଆରିଷ୍ଟଟଲ ସୌନ୍ଦର୍ଯ୍ୟ ବର୍ଣ୍ଣନା ପ୍ରସଙ୍ଗରେ କହିଛନ୍ତି ଯେ "ସୌନ୍ଦର୍ଯ୍ୟ ଆକାର ଏବଂ ଶୃଙ୍ଖଳାର ବିଷୟ ଅଟେ । (Beauty is a matter of size and order) । ସେ ପୁନଶ୍ଚ କହିଛନ୍ତି ଯେ ଏକ ସଜୀବ ପ୍ରାଣୀ

ସୁନ୍ଦର ହୁଏ ସେତେବେଳେ ତାର ଅଟପଟୋଳିତ ସ୍ୱଭାବ ମଧ୍ୟରେ ଏକ ନୈପୁଣ୍ୟ ଥାଏ ଓ ଅକାରର ମଧ୍ୟ ସାମଞ୍ଜସ୍ୟ ଥାଇ ପ୍ରାଣୀଟି ମାଧୁର୍ଯ୍ୟ ବା ନୈପୁଣ୍ୟ ହୋଇଥାଏ ।

ଆରିଷ୍ଟଟଲ **ପୋଏଟିକସ୍** (Poetics) ଗ୍ରନ୍ଥରେ କୁତ୍ସିତ ସମ୍ବନ୍ଧରେ ଉଲ୍ଲେଖ କରିଛନ୍ତି । ତାଙ୍କ ମତରେ କମେଡ଼ିର ବିଷୟବସ୍ତୁ କୁତ୍ସିତ ଶ୍ରେଣୀର ଅନ୍ତର୍ଗତ ହାସ୍ୟାସ୍ପଦ ବିଷୟ ଅଟେ । (The ridi:ulous which is a species of the ugly is the subject matter of company) । ଏଥି ଦ୍ୱାରା ବୁଝାଯାଏ ଯେ ଆରିଷ୍ଟଟଲଙ୍କ ମତରେ କୁତ୍ସିତ ମଧ୍ୟ ଲଳିତ କଳାର ଆଲୋଚ୍ୟ ବିଷୟ ଅଟେ । କୁତ୍ସିତ ସହିତ ସୌନ୍ଦର୍ଯ୍ୟର ସମ୍ପର୍କ ବିଷୟରେ ଆରିଷ୍ଟଟଲ ବିଶେଷ ଆଲୋଚନା କରି ନାହାନ୍ତି । ଏହି ବିଷୟରେ ଦାର୍ଶନିକ କାଣ୍ଟ କହନ୍ତି ଯେ "ଯାହା କୁତ୍ସିତ; ଲଳିତକଳା ତାହାକୁ ମଧ୍ୟ ସୁନ୍ଦର ବୋଲି ବର୍ଣ୍ଣନା ଦେଇପାରେ"— ( **Beautiful art shows its superiority in this, that it describes as beautiful things which may i. e in nature ugly or displeasing.** —*Kante Critique,of Judgement* ).

## ଲଳିତ କଳା ଓ କଳା :—

ଲଳିତ କଳା ସମ୍ବନ୍ଧରେ ଆଲୋଚନାରେ ଆରିଷ୍ଟଟଲ କହିଛନ୍ତି ଯେ ଲଳିତ କଳାର କାର୍ଯ୍ୟ ସୃଷ୍ଟି କରିବା । ସୃଷ୍ଟ ବସ୍ତୁର ଉତ୍କର୍ଷତା ଭିତ୍ତିରେ ହିଁ ଲଳିତ କଳାର ଉତ୍କର୍ଷତା ନିରୂପିତ ହୁଏ । ଆରିଷ୍ଟଟଲଙ୍କ ମତରେ କଳା ମୁଖ୍ୟତଃ ଦୁଇ ପ୍ରକାରର — (୧) ଯେଉଁ କଳା ପ୍ରକୃତିର ପରିପୂରକ ଏବଂ (୨) ଯେଉଁ କଳା ପ୍ରକୃତିର ଅନୁକରଣ । ପ୍ଲେଟୋ ଓ ଆରିଷ୍ଟଟଲ ଉଭୟେ ପ୍ରକୃତିର ଅନୁକରଣକାରୀ କଳାକୁ 'ଲଳିତ କଳା' ବୋଲି ଆଖ୍ୟା ଦେଇଛନ୍ତି । 'ଲଳିତ କଳା'ର ଜଗତ କଳ୍ପନାମୟ ଜଗତ ଅଟେ । ଏହି କଳ୍ପନାମୟ ଜଗତ ବସ୍ତୁଜଗତର ଅନୁକରଣ ଭିତ୍ତିରେ ହିଁ ସୃଷ୍ଟି ହୋଇଅଛି । ପ୍ଲେଟୋଙ୍କ ମତରେ ଲଳିତକଳା ଅଧିବିଦ୍ୟା ଦୃଷ୍ଟିରୁ ଅନୁକରଣରୁ ଅନୁକରଣ ମାତ୍ର । ତାଙ୍କ ମତରେ ଜାତି ଏକ ଆଦର୍ଶ ଏବଂ ପ୍ରାକୃତିକ ବସ୍ତୁ ଏହାର ଦୃଷ୍ଟାନ୍ତ ଅଟେ । ଲଳିତ କଳା ଏହି ଦୃଷ୍ଟାନ୍ତର ଅନୁକରଣ । ମନୁଷ୍ୟର ଚିତ୍ର ଜାଗତିକ ମନୁଷ୍ୟର ଅନୁକରଣ ମାତ୍ର । ଅତଏବ ଚିତ୍ରକଳା ସମସ୍ତ ପ୍ରକାରର ଲଳିତ କଳା ହିଁ ଅନୁକରଣର ଅନୁକରଣ ଅଟେ । ଜାତି ହିଁ ଏକମାତ୍ର ସତ୍ୟ, ସମସ୍ତ ଜାଗତିକ ବସ୍ତୁ ତାହାର ଅନୁକରଣ ବୋଲି, ଏଥିରୁ ଜାତି ଭିନ୍ନ ସତ୍ୟ ନୁହେଁ ଏବଂ ଲଳିତ କଳା ଜାଗତିକ ବସ୍ତୁର ଅନୁକରଣ ହେବାରୁ ଏହା ସତ୍ୟଠାରୁ ଅନେକ ଦୂରରେ ଅବସ୍ଥିତ ।

ପୁନଶ୍ଚ ପ୍ଲେଟୋଙ୍କ ମତରେ ସତ୍ୟ ଓ କଲ୍ୟାଣର ମୂଲ୍ୟ ସର୍ବାଧିକ ଅଟେ । ଲଳିତ କଳା ଯେହେତୁ ସତ୍ୟ ପ୍ରକାଶ କରିବାରେ ଅସମର୍ଥ ସେହି ହେତୁ ପ୍ଲେଟୋ ଏହାର ଏକ ସମାଲୋଚକ ଅଟନ୍ତି ।

ପ୍ଲେଟୋଙ୍କ ମତରେ ବ୍ୟକ୍ତି ବା ବିଶେଷ ବସ୍ତୁ ଯେପରି ତାହାର ଫଟୋଗ୍ରାଫିକ୍ ଅନୁକରଣ ନୁହେଁ ସେହିପରି କଳା ବ୍ୟକ୍ତି ବା ବିଶେଷ ବସ୍ତୁର ଅନୁକରଣ ହେଲେହେଁ ଫଟୋଗ୍ରାଫି ଅନୁକରଣ ନୁହେଁ । କଳା କଳ୍ପନା ସୃଷ୍ଟ ଅଟେ । କଳାରେ ସୌନ୍ଦର୍ଯ୍ୟ ସୃଷ୍ଟି ନିମନ୍ତେ ପ୍ରତୀକ ବ୍ୟବହାର କରାଯାଏ । କଳାର ପ୍ରଭାବ ମନୁଷ୍ୟ ଅନୁଭୂତି ଉପରେ ପ୍ରତିଷ୍ଠିତ । 'Art for the sake of Art' ଅର୍ଥାତ୍ କଳା ନିମନ୍ତେ ହିଁ କଳା.'' ଏହି ମତରେ ପ୍ଲେଟୋ ବିଶ୍ୱାସୀ ନ ଥିଲେ । ତାଙ୍କ ମତରେ 'କଳା' ଏକ କଲ୍ୟାଣର ବାର୍ତ୍ତାବହ ଅଟେ ।

କିନ୍ତୁ ପ୍ଲେଟୋ ଅନୁକରଣକୁ ଯେପରି ନିନ୍ଦନୀୟ ବୋଲି ମନେକରିଥିଲେ ଆରିଷ୍ଟଟଲ ସେହି ମତକୁ ସେପରି ଭାବରେ ଗ୍ରହଣ କରିନାହାନ୍ତି । ପ୍ଲେଟୋଙ୍କ ମତରେ ବସ୍ତୁଜଗତ ଆଧ୍ୟାତ୍ମିକ ଜଗତର ପ୍ରତିରୂପ ଏବଂ ଲଳିତ କଳା ଏହି ପ୍ରତିରୂପର ପ୍ରତିରୂପ ଅଟେ । କିନ୍ତୁ ଆରିଷ୍ଟଟଲଙ୍କ ମତରେ ଲଳିତକଳାରେ ଶିଳ୍ପୀ ବସ୍ତୁର ଆଦର୍ଶରୂପ ବା ଠିକରୂପ ଉପସ୍ଥିତ କରିବାର ଚେଷ୍ଟା କରିଥାଏ । ଆରିଷ୍ଟଟଲଙ୍କ ମତରେ ଟ୍ରେଜେଡ଼ି ଆଧୁନିକ କାଳର ମନୁଷ୍ୟମାନଙ୍କ ଅପେକ୍ଷା ଉତ୍କୃଷ୍ଟତର ମନୁଷ୍ୟ ଏବଂ କମେଡ଼ି ନିକୃଷ୍ଟତର ମନୁଷ୍ୟ ସୃଷ୍ଟି କରେ । ( **Tragedy makes its personages better, comedy worse, than the men of the persent day—** ***Poetics***) । ଉଦାହରଣ ସ୍ୱରୂପ :— ହୋମରଙ୍କ କାବ୍ୟର ମନୁଷ୍ୟ ଆଧୁନିକ ମନୁଷ୍ୟଠାରୁ ଉତ୍କୃଷ୍ଟ ଅଟେ ।

ପୁନଶ୍ଚ ଆରିଷ୍ଟଟଲଙ୍କ ମତରେ ଅନୁକରଣ ମନୁଷ୍ୟର ଏକ ସ୍ୱାଭାବିକ ଗୁଣ ଅଟେ । ଅନୁକରଣରୁ ହିଁ ମନୁଷ୍ୟ ସ୍ୱାଭାବିକ ଆନନ୍ଦ ଲାଭ କରିଥାଏ । ଶିଳ୍ପୀ ଯେତେବେଳେ ଏକ ଦୁଃଖର ବିଷୟବସ୍ତୁକୁ ଶିଳ୍ପ ମାଧ୍ୟମରେ ପ୍ରକାଶ କରିଥାଏ ସେହି ଶିଳ୍ପ ମନୁଷ୍ୟକୁ ଆନନ୍ଦ ଦେଇଥାଏ । ଏହାଙ୍କ ମତରେ କାବ୍ୟର ବୈଶିଷ୍ଟ୍ୟ ଜାତି ସମ୍ବନ୍ଧୀୟ ହେବା ସ୍ଥଳେ ଇତିହାସର ବିଷୟବସ୍ତୁ ବ୍ୟକ୍ତି ସମ୍ବନ୍ଧୀୟ ଅଟେ । ଏଣୁ କାବ୍ୟ ଇତିହାସ ଅପେକ୍ଷା ଗଭୀରତର ଅର୍ଥ ଜ୍ଞାପକ ଏବଂ ଦାର୍ଶନିକତାର ବାହକ ଅଟେ । ଶିଳ୍ପୀ ଟାଇପ୍ ଚରିତ୍ର ସୃଷ୍ଟି କରିଥାଏ । ଇତିହାସ ଟାଇପ ଚରିତ୍ର ସମ୍ବନ୍ଧୀୟ ଆଲୋଚନା କରି ନ ଥାଏ । କବି ଇତିହାସରୁ ଉପାଦାନ ସଂଗ୍ରହ କରି କାବ୍ୟ ରଚନା କରିଥାନ୍ତି । ଇତିହାସରେ ଯାହା ଯେପରି ତାହା ସେହିପରି ଭାବରେ ଲେଖା ଯାଇଥାଏ । କିନ୍ତୁ କବି କାବ୍ୟରେ ସମ୍ଭବ ଏବଂ ସମ୍ଭାବ୍ୟ ବସ୍ତୁ ବିଷୟର ବର୍ଣ୍ଣନା କରିଥାନ୍ତି ।

ଆରିଷ୍ଟଟଲଙ୍କ ମତରେ କବି ଦାର୍ଶନିକଙ୍କ ପରି ଅମୂର୍ତ୍ତ ଭାବ ବା ପ୍ରତ୍ୟୟ ସମ୍ବନ୍ଧରେ ଆଲୋଚନା କରି ନ ଥାନ୍ତି । ତାଙ୍କ ମତରେ କାବ୍ୟ ଓ ଦର୍ଶନ ଭିନ୍ନ ଭିନ୍ନ ଗୋଷ୍ଠୀ ଅନ୍ତର୍ଗତ । କବିଙ୍କର ସୃଷ୍ଟ ଟାଇପ (Type) ଦର୍ଶନର ଭାବ ବା ପ୍ରତ୍ୟୟ ନୁହେଁ ।

## ମହାକାବ୍ୟ, ଟ୍ରାଜେଡ଼ି ଓ କମେଡ଼ି :—

ଆରିଷ୍ଟଟଲ ତାଙ୍କର ପୋଏଟିକ୍ସ ଗ୍ରନ୍ଥରେ ମହାକାବ୍ୟ, ଟ୍ରାଜେଡ଼ି ଏବଂ କମେଡ଼ି ସମ୍ବନ୍ଧରେ ବିଶଦ ଆଲୋଚନା କରିଛନ୍ତି । ନୃତ୍ୟ, ସ୍ଥାପତ୍ୟ ଏବଂ ସଙ୍ଗୀତ ଶିଳ୍ପ ସମ୍ବନ୍ଧୀୟ ଆଲୋଚନା ମଧ୍ୟ ଏହି ପୋଏଟିକସ୍ ଗ୍ରନ୍ଥରେ ଆରିଷ୍ଟଟଲ କରିଛନ୍ତି । ତାଙ୍କ ମତରେ ସଙ୍ଗୀତ ମଧ୍ୟରେ ହିଁ ଅନୁକରଣ ମାତ୍ରା ସବୁଠାରୁ ଅଧିକ । ସଙ୍ଗୀତ ସାଧାରଣତଃ ନାଟକର ଅଂଶ ରୂପେ ଏହି ଆଲୋଚନାରେ ସ୍ଥାନ ପାଇଅଛି । ଏହି ଗ୍ରନ୍ଥରେ ଆରିଷ୍ଟଟଲ କହିଛନ୍ତି ମନୁଷ୍ୟର ଚରିତ୍ର ଗଠନର ଏକ କ୍ଷମତା ସଙ୍ଗୀତରେ ଅଛି । ଅତଏବ ଅଳ୍ପ ବୟସ୍କମାନଙ୍କର ଶିକ୍ଷାଦାନରେ ସଙ୍ଗୀତର ଏକ ସ୍ଥାନ ରହିବା ନିତାନ୍ତ ଅପରିହାର୍ଯ୍ୟ ଅଟେ । ପୁନଶ୍ଚ ଆରିଷ୍ଟଟଲଙ୍କ ମତାନୁସାରେ ସଙ୍ଗୀତ, ନାଟକ, ପ୍ରଭୃତି ଲଳିତକଳାର ବିଭିନ୍ନ କାର୍ଯ୍ୟ ମାଧ୍ୟମରେ ନୈତିକ ଶିକ୍ଷା ଦେବାରେ ଅଧିକ ଗୁରୁତ୍ୱ ଦେଇଛନ୍ତି ତଥାପି ସେ ଏହି କଳାର ଆନନ୍ଦ ଦାନ କ୍ଷମତା କଥା ସ୍ୱୀକାର କରିଛନ୍ତି । ଆରିଷ୍ଟଟଲ ଟ୍ରାଜେଡ଼ିର ଲକ୍ଷଣ ସମ୍ବନ୍ଧରେ କହିଛନ୍ତି ଯେ ଟ୍ରାଜେଡ଼ି ଏପରି ଏକ କାର୍ଯ୍ୟର ଅନୁକରଣ ଯାହା ଧୀର ଏବଂ ସ୍ୱୟଂ ସମ୍ପୂର୍ଣ୍ଣ ଟ୍ରାଜେଡ଼ିର ଅନୁସଙ୍ଗ ସୁଖ ଅଟେ । ଟ୍ରାଜେଡ଼ି ବର୍ଣ୍ଣନାମୂଳକ ନ ହୋଇ ନାଟକୀୟ ଢଙ୍ଗରେ ହୋଇଥାଏ । ଟ୍ରାଜେଡ଼ିରେ ଏପରି ଘଟଣା ସନ୍ନିବେଶିତ ହୋଇଥାଏ ଯାହା କରୁଣା ଏବଂ ଭୀତିର ଉଦ୍ରେକ କରିଥାଏ ଏବଂ ଟ୍ରାଜେଡ଼ି ମଧ୍ୟରେ ଏହି ଭାବର ଯୁକ୍ତିଯୁକ୍ତ ରେଚନ ହୋଇଥାଏ ।

A Tragedy— is the immitation of an action that is serious and also as having magnitude, complete in itself: in language with pleasurable ac essories, each kind brought in separately in the part of the work; in a dramatic, not in a narrative form; with incidents arousing pity and fear, where with to accomplish its catharsis of such emotions.

—*Poetics.*

ଆରିଷ୍ଟଟଲଙ୍କ ମତରେ ଟ୍ରାଜେଡ଼ିର ବିଷୟବସ୍ତୁ ଧୀର, ମହତ୍ ଏବଂ କଲ୍ୟାଣକର ହେବା ବାଞ୍ଛନୀୟ । ମହାକାବ୍ୟ ସହିତ ଟ୍ରାଜେଡ଼ି ଏହି ପ୍ରସଙ୍ଗରେ ସାଦୃଶ୍ୟ ଅଛି । କିନ୍ତୁ କମେଡ଼ି ଏବଂ ସାଟାୟାର (Satire) ବିଷୟବସ୍ତୁ ନିକୃଷ୍ଟ ବା କୁତ୍ସିତ ବା ହାସ୍ୟପ୍ରଦ ବୋଲି ଟ୍ରାଜେଡ଼ି ସହିତ କମେଡ଼ି ଏବଂ ସାଟାୟାରର ବିଷୟଗତ ପାର୍ଥକ୍ୟ ସୁସ୍ପଷ୍ଟ ।

କମେଡ଼ି ସମ୍ବନ୍ଧରେ ଆରିଷ୍ଟଟଲ କହନ୍ତି ଯେ କମେଡ଼ି ସ୍ୱୟଂ ସମ୍ପୂର୍ଣ୍ଣ ହେବା ବାଞ୍ଛନୀୟ । ଅର୍ଥାତ୍ କମେଡ଼ି ମଧ୍ୟରେ ଏକ ଐକ୍ୟ ରହିବା ଉଚିତ । କମେଡ଼ିର ଗଠନରେ ମଧ୍ୟ ଆଙ୍ଗିକ ଐକ୍ୟ ରହିବା ସ୍ୱାଭାବିକ । ଟ୍ରାଜେଡ଼ିର ଅନୁସଙ୍ଗ ସୂତ୍ର ଅଟେ । ଏ କଥାକୁ ବ୍ୟାଖ୍ୟା କରିବାକୁ ଯାଇ ଆରିଷ୍ଟଟଲ କହନ୍ତି ଯେ ଟ୍ରାଜେଡ଼ିରେ ଛନ୍ଦ ଏବଂ ଆଳାପନ ବା ସଙ୍ଗୀତ ରହିବା ସ୍ୱାଭାବିକ । ଟ୍ରାଜେଡ଼ି କଥୋପକଥନ ଭିତ୍ତିରେ ହିଁ ହେବା ଉଚିତ । ଏହା ନାଟକୀୟ ନ ହୋଇ ବିବୃତିମୂଳକ ହେବା ବାଞ୍ଛନୀୟ । ଏହି ଉକ୍ତି ଦ୍ୱାରା ଆରିଷ୍ଟଟଲ ବିବୃତିମୂଳକ ମହାକାବ୍ୟଠାରୁ ଟ୍ରାଜେଡ଼ିର ପାର୍ଥକ୍ୟ ଦର୍ଶାଇଅଛନ୍ତି ।

ଆରିଷ୍ଟଟଲଙ୍କ ମତରେ ଟ୍ରାଜେଡ଼ି ଛଅଗୋଟି ଉପାଦାନବିଶିଷ୍ଟ ଅଟେ । ଯଥା;— (୧) ଆଖ୍ୟାୟିକା (୨) ଚରିତ୍ର (୩) ଭାଷା (୪) ଚିନ୍ତା (୫) ଦୃଶ୍ୟ ଏବଂ (୬) ସ୍ୱର ।

ଆରିଷ୍ଟଟଲଙ୍କ ମତରେ ଆଖ୍ୟାୟିକା ହିଁ ଟ୍ରାଜେଡ଼ିର ସର୍ବପ୍ରଥମ ଉପାଦାନ ଅଟେ । ଏହି ଆଖ୍ୟାୟିକା ବ୍ୟକ୍ତିର ଅନୁକରଣ ପ୍ରକାଶ ନ କରି, କର୍ମ ଓ ଜୀବନର ଅନୁକରଣ ପ୍ରକାଶ କରିଥାଏ । ଚରିତ୍ର ଚୟନ ଆଖ୍ୟାୟିକା ପ୍ରୟୋଜନ ଅନୁସାରେ ହେବା ଉଚିତ । ଟ୍ରାଜେଡ଼ିରେ ଆଖ୍ୟାୟିକା ପରେ ଚରିତ୍ରର ସ୍ଥାନ ଅଟେ । ଟ୍ରାଜେଡ଼ି ଚିନ୍ତା ସମୃଦ୍ଧିଶୀଳ ହେବା ବାଞ୍ଛନୀୟ, ଅର୍ଥାତ୍ କୌଣସି ବିଷୟରେ ଆଲୋଚନା ସନ୍ନିବେଶିତ ହୋଇ ଏହାର ମାନ ଉଚ୍ଚକୋଟିର ହେବା ଉଚିତ । ଏହାର ଭାଷା ଗଦ୍ୟ ଓ ପଦ୍ୟ ଉଭୟ ପ୍ରକାରର ହେବ । ଏଥିରେ ସଙ୍ଗୀତର ସ୍ଥାନ ମଧ୍ୟ ରହିବା ବାଞ୍ଛନୀୟ । ଏହି ସଙ୍ଗୀତକୁ ହିଁ ଆରିଷ୍ଟଟଲ ସ୍ୱର ଆଖ୍ୟା ଦେଇଛନ୍ତି । ଟ୍ରାଜେଡ଼ିର ସର୍ବଶ୍ରେଷ୍ଠ ଉପାଦାନ ଦୃଶ୍ୟପଟ ଅଟେ । ଦର୍ଶକଙ୍କର ମନ ଆକୃଷ୍ଟ କରିବା ନିମନ୍ତେ ଏହି ଦୃଶ୍ୟପଟ ଆବଶ୍ୟକ । ପରନ୍ତୁ ଆରିଷ୍ଟଟଲଙ୍କ ମତରେ କେବଳ ଜାକ୍‌ଜମକ ଦୃଶ୍ୟପଟ ଦ୍ୱାରାହିଁ ଟ୍ରାଜେଡ଼ିର ଜନମନ ବିସ୍ତାର କରିହୁଏ ନାହିଁ । ଆଖ୍ୟାୟିକା ଓ ଚରିତ୍ର ଏହି ଦୁଇଟି ବସ୍ତୁ ଟ୍ରାଜେଡ଼ିର ମୁଖ୍ୟ ହୋଇଥିବାରୁ, ଏହା ଉପରେ ହିଁ ଟ୍ରାଜେଡ଼ିର ଶ୍ରେଷ୍ଠତ୍ୱ ନିର୍ଭର କରିଥାଏ ।

ଟ୍ରାଜେଡ଼ିର ଆଖ୍ୟାୟିକା ସମ୍ବନ୍ଧରେ ଆରିଷ୍ଟଟଲ କହନ୍ତି ଯେ ଯେଉଁ କର୍ମ ମନୁଷ୍ୟ ମନରେ କରୁଣା ଏବଂ ଭୀତିର ଉଦ୍ରେକ କରିଥାଏ, ଟ୍ରାଜେଡ଼ିର ଆଖ୍ୟାୟିକା ସେହି ସମ୍ବନ୍ଧୀୟ ହେବା ବାଞ୍ଛନୀୟ । ଆରିଷ୍ଟଟଲ ନିମ୍ନଲିଖିତ ତିନିପ୍ରକାର ବିଷୟକୁ ଟ୍ରାଜେଡ଼ିର ଅନ୍ତର୍ଗତ ନୁହେଁ ବୋଲି କହନ୍ତି ।

(୧) ଏକ ସତ୍ ବ୍ୟକ୍ତି ସୁଖ ଅବସ୍ଥାରୁ ଯାଇ ଗଭୀର ଦୁଃଖ ଅବସ୍ଥାରେ ପଡ଼ିବା—ଏପରି ଘଟଣା ଟ୍ରାଜେଡ଼ିରେ ରହିବା ବାଞ୍ଛନୀୟ ନୁହେଁ । କାରଣ ଏହି ଜାତୀୟ ଘଟଣା ଆମ୍ଭେମାନେ ପସନ୍ଦ କରୁନାହୁଁ ଅତଏବ ଏହାଦ୍ୱାରା କରୁଣା ଉଦ୍ରେକ ହେବ ନାହିଁ ।

(୨) ଏକ ଅସତ୍ ବ୍ୟକ୍ତିର ଦୁଃଖ ଅବସ୍ଥାରୁ ମହାସୁଖ ଅବସ୍ଥାରେ ପ୍ରବେଶ—ଏପରି ଘଟଣା ମଧ୍ୟ ଟ୍ରାଜେଡ଼ିରେ ରହିବା ବାଞ୍ଛନୀୟ ନୁହେଁ । କାରଣ ଆରିଷ୍ଟଟଲଙ୍କ ମତରେ ଏହି ଜାତୀୟ ଘଟଣା ଆମ୍ଭମନରେ କରୁଣା ବା ଭୀତ କୌଣସି ପ୍ରକ୍ଷୋଭ ସୃଷ୍ଟି କରେ ନାହିଁ ।

(୩) ଏକ ଅତ୍ୟନ୍ତ ଅସତ୍ ବ୍ୟକ୍ତି ସୁଖ ଜୀବନରୁ କ୍ରମଶଃ ଦୁଃଖମୟ ଜୀବନକୁ ଆଗେଇ ଗିବା—ଏପରି ଘଟଣା ମଧ୍ୟ ଟ୍ରାଜେଡ଼ି ଆଖ୍ୟାୟିକା ଅନ୍ତର୍ଭୁକ୍ତ ନୁହେଁ । କାରଣ ଏହି ଘଟଣା ମନରେ ମାନବିକ ଅନୁଭୂତି ସୃଷ୍ଟି କରିପାରେ କିନ୍ତୁ କରୁଣା ବା ଭୀତ ଉଦ୍ରେକ କରିପାରେ ନାହିଁ । ଯାହାର ଦୁଃଖ ପାଇବା ଉଚିତ ନୁହେଁ ସେ ଦୁଃଖ ଭୋଗ କଲେ ଆମ୍ଭ ମନରେ କରୁଣା ଉଦ୍ରେକ ହୋଇଥାଏ ଏବଂ ଆମ୍ଭମାନଙ୍କ ଭଳି ବ୍ୟକ୍ତି ଦୁର୍ଭାଗ୍ୟ ଭୋଗ କଲେ ଆମ୍ଭମନରେ ଭୟ ଜାତ ହୁଏ । ଆଖ୍ୟାୟିକା ମଧ୍ୟରେ ଏପରି କିଛି ରହିବା ଉଚିତ ଯାହା ଫଳରେ ମନରେ କରୁଣା ଓ ଭୀତ ଉଦ୍ରେକ ହେବ ।

ଆରିଷ୍ଟଟଲ ମୁଖ୍ୟତଃ ଟ୍ରାଜେଡ଼ିକୁ କରୁଣା ଏବଂ ଭୀତ, ଏହି ଦୁଇ ପ୍ରକ୍ଷୋଭର ରେଚନ ବୋଲି ଉଲ୍ଲେଖ କରିଛନ୍ତି । ଆରିଷ୍ଟଟଲଙ୍କ ଉପରୋକ୍ତ କଥାର ତାତ୍ପର୍ଯ୍ୟ ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରାହୋଇଛି । ଅଧ୍ୟାପକ 'ରସ୍' (Ross) ତାଙ୍କର (Aristotle) ଗ୍ରନ୍ଥରେ କହିଛନ୍ତି— "ଏହି ବିଖ୍ୟାତ ମତବାଦ ନେଇ ଏକ ସମ୍ପୂର୍ଣ୍ଣ ଗ୍ରନ୍ଥାଗାର ଲେଖା ହୋଇଅଛି" । (A whole liebrary has been written on this famous doctrine. —*Ross, Aristotle, P.282*

ଅନେକ ଦାର୍ଶନିକଙ୍କ ମତରେ **ପୋୟେଟିକସ୍** (Poetics) ଗ୍ରନ୍ଥର ଦ୍ୱିତୀୟ ଖଣ୍ଡରେ ଆରିଷ୍ଟଟଲ ରେଚନ କଥାର ତାତ୍ପର୍ଯ୍ୟ ପ୍ରକାଶ କରିଥିଲେ । କିନ୍ତୁ ଏହି ଗ୍ରନ୍ଥଟି ଆଜିକାଲି ଦୁଷ୍ପ୍ରାପ୍ୟ ହୋଇଛି ଯା ଫଳରେ ରେଚନ କଥାର ତାତ୍ପର୍ଯ୍ୟ ନେଇ ଦାର୍ଶନିକମାନଙ୍କର ମତଭେଦ ଅଛି ।

ରେଚନ କଥାଟିର ଦୁଇ ରକମ ବ୍ୟାଖ୍ୟା ଦିଆ ହୋଇଅଛି । (୧) ରେଚନ କରୁଣା ଓ ଭୀତ ନାମକ ପ୍ରକ୍ଷୋଭର ବିଶୁଦ୍ଧୀକରଣକୁ ବୁଝାଏ । (Catharsis is a

purification of the emotions of pity and fear) । ଉପମାଟି ଆନୁଷ୍ଠାନିକ ବିଶୁଦ୍ଧିକରଣଠାରୁ ଗୃହୀତ ହୋଇଛି । ଲେସିଂ (Lessing) ଏହି ମତର ସମର୍ଥକ ଅଟନ୍ତି ।

(୨) ରେଚନ କରୁଣା ଏବଂ ଭୀତି ନାମକ ପ୍ରକ୍ଷୋଭର ସାମୟିକ ଅପସାରଣ (The cootharsis is a temporary elimination of the emotions ofpity and fear) । ଏଠି ଉପମାଟି ଚିକିତ୍ସାଶାସ୍ତ୍ରରୁ ଗ୍ରହଣ କରାଯାଇଛି । ବାର୍ନେସ (Bernays ଏହି ମତର ସମର୍ଥକ । ଏହି ମତାନୁସାରେ ଟ୍ରାଜେଡିର ପ୍ରତ୍ୟକ୍ଷ ଉଦ୍ଦେଶ୍ୟ କରୁଣା ଏବଂ ଭୀତି ଉଦ୍ରେକ କରିବା; (ନାୟକର ଅଯାଚିତ ଦୁଃଖ ଜନିତ କରୁଣା ଏବଂ ଭବିଷ୍ୟତର ସମ୍ଭାବ୍ୟ ଦୁଃଖ ଜନିତ ଭୀତି) ଏବଂ ପରୋକ୍ଷ ଉଦ୍ଦେଶ୍ୟ ଶିଳ୍ପ ମାଧ୍ୟମରେ ସୁଖଦାୟକ ଓ ନିର୍ଦ୍ଦୋଷ ବହିର୍ଗମନର ପଥ ମାଧ୍ୟମରେ ମନରୁ କରୁଣା ଏବଂ ଭୀତିର ପ୍ରକ୍ଷୋଭ ବାହାର କରିଦେବା । ପ୍ଲେଟୋ ରିପବ୍ଲିକ ଗ୍ରନ୍ଥର ଟ୍ରାଜେଡିର ଅନୈତିକ ପ୍ରତିକ୍ରିୟା ବିଷୟରେ କହିଛନ୍ତି । ଆରିଷ୍ଟଟଲ ଏ ମତବାଦ ସ୍ୱୀକାର କରିନାହାନ୍ତି । ତାଙ୍କ ମତରେ ଟ୍ରାଜେଡି ଏକ ନିର୍ଦ୍ଦୋଷ ଶିଳ୍ପ ଅଟେ ।

**ପଲିଟିକସ** ଗ୍ରନ୍ଥ ପାଠକଲେ ବୁଝାଯାଏ ଯେ ଆରିଷ୍ଟଟଲ କୌଣସି ନୈତିକ ଅର୍ଥରେ 'ରେଚନ' ଶବ୍ଦଟିକୁ ବ୍ୟବହାର କରିନାହାନ୍ତି । ଉଦାହରଣ :— ଆରିଷ୍ଟଟଲଙ୍କ ମତରେ ବଂଶୀର କୌଣସି ନୈତିକ ପ୍ରଭାବ ନାହିଁ । ମନୁଷ୍ୟର ମନ ମଧ୍ୟରେ ଆନ୍ଦୋଳନ ସୃଷ୍ଟି କରି ପ୍ରକ୍ଷୋଭ ସୃଷ୍ଟି କରିବା ହିଁ 'ବଂଶୀ'ର କାର୍ଯ୍ୟ । ଏଇ କଥାରୁ ଜଣାଯାଏ ଯେ 'ରେଚନ' ନୈତିକ ପ୍ରଭାବ ସହିତ ଯୁକ୍ତ ନୁହେଁ, ଏହା ପ୍ରକ୍ଷୋଭ ସହିତ ଯୁକ୍ତ ଅଟେ ।

ଆରିଷ୍ଟଟଲ ସଙ୍ଗୀତର ପ୍ରଭାବ ସମ୍ବନ୍ଧରେ ଆଲୋଚନା କରିଛନ୍ତି । ତାଙ୍କ ମତରେ ସଙ୍ଗୀତର ତିନିଗୋଟି କର୍ମ ଅଛି । (କ) ଶିକ୍ଷାଦାନ (ଖ) ବିଶୁଦ୍ଧୀକରଣ (ଗ) ଆନନ୍ଦ ଦାନ ବା ଅବକାଶ ବିନୋଦନ ।

ବିଶୁଦ୍ଧିକରଣ କଥାଟି ବ୍ୟାଖ୍ୟା କରିବାକୁ ଯାଇ ଆରିଷ୍ଟଟଲ କହିଛନ୍ତି ଯେ ମନରୁ ଦୁଶ୍ଚିନ୍ତା ଦୂର କରିବା ଓ ମନ ହାଲୁକା କରିବା ଅର୍ଥ ଶୁଦ୍ଧୀକରଣ ଅଟେ । ସଙ୍ଗୀତ ଏକପ୍ରକାର ନିର୍ଦ୍ଦୋଷ ସୁଖ ହୋଇଥିବାରୁ, ଏହା ସାହାଯ୍ୟରେ ମନୁଷ୍ୟ ମନରୁ ଦୁଃଖ ଦୂର କରି ବିଶୁଦ୍ଧ ହୋଇପାରେ । ଏଠାରେ ବିଶୁଦ୍ଧ କଥାର କୌଣସି ନୈତିକ ଅର୍ଥ ନାହିଁ । ଏଥିପାଇଁ ଅନେକ ଦାର୍ଶନିକଙ୍କ ମତ ଯେ ରେଚନ କଥାଟିର ଅର୍ଥ 'ଆନୁଷ୍ଠାନିକ ବିଶୁଦ୍ଧୀକରଣ' ସହିତ କୌଣସି ଭାବରେ ଯୁକ୍ତ ନୁହେଁ । ଅତଏବ ରେଚନର ଅର୍ଥ କରୁଣା ଓ ଭୀତି ନାମକ ପ୍ରକ୍ଷୋଭର ସାମୟିକ ଅପସାରଣ ବା ଦୂରୀକରଣ ଅଟେ ।

ଅନେକ ଦାର୍ଶନିକ ଉପରୋକ୍ତ ମତ ମଧ୍ୟ ସ୍ୱୀକାର କରନାହାନ୍ତି । ଉଦାହରଣ ଷ୍ଟେସ୍ (Stace) କହୁଛନ୍ତି ଯେ, "ଯେଉଁମାନେ କହୁଛନ୍ତି ଯେ ଦୁଃଖାନ୍ତ ନାଟକ ଦର୍ଶକର ମନକୁ କରୁଣା ଓ ଭୀତିର ପ୍ରକ୍ଷୋଭଠାରୁ ମୁକ୍ତ କରେ ସେମାନେ ପଣ୍ଡିତ ହୋଇଥିଲେହେଁ, ଆରିଷ୍ଟଟଲଙ୍କ ମୂଳସୂତ୍ର ବୁଝିନାହାନ୍ତି । ଷ୍ଟେସଙ୍କର 'ରେଚନ' ଉକ୍ତିର ବ୍ୟାଖ୍ୟା ବେଦମତବାଦୀମାନଙ୍କ ଦ୍ୱାରା ସ୍ୱୀକୃତ ହୋଇଅଛି । ଷ୍ଟେସଙ୍କର ମତରେ ପ୍ରକୃତ ମହତ୍ ଏବଂ ଟ୍ରାଜିକ ଦୁଃଖର ଦୃଶ୍ୟାବଳୀ ଦର୍ଶକଙ୍କ ମନରେ କରୁଣା ଏବଂ ଭୀତିର ପ୍ରକ୍ଷୋଭ ସୃଷ୍ଟି କରିଥାଏ ଏବଂ ଏହାଦ୍ୱାରା ଦର୍ଶକଙ୍କର ମନ ମୁକ୍ତ, ଶାନ୍ତ ଓ ଶୁଦ୍ଧ ହୋଇଥାଏ । (The representation of truely great and tragic sufferings a rouses in the beholder pity and terror which purge his spirit and render it serene and pure.

—*'Tatbat'*.

---

"The theory of certain scholars based upon etymological grounds, that it means that the soul is purged, not through, but of pity and terror, that by means of a diarrhoea of these unpleasant emotions we get rid of them are left happy, if the throught of men whose scholarship may be great but whose understanding of art is limited. Such a theory would reduce Aristotle's great and illuminating criticism to the meaningless babbles of a philistine" —Stace, *Critical History of Philosophy, P. 33.*

—x—

# ଉପସଂହାର

ଦାର୍ଶନିକ ପ୍ଲେଟୋଙ୍କର ଚିନ୍ତାଧାରା କାବ୍ୟଧର୍ମୀ । ତାଙ୍କର କଳ୍ପନା ପ୍ରାଣଦର୍ଶୀ ଓ ନାନା ମୌଳିକ ପଙ୍କଜଭାବେ ପୂର୍ଣ୍ଣ । ଅନ୍ୟପକ୍ଷରେ ଆରିଷ୍ଟଟଲଙ୍କର ଦର୍ଶନ ବାସ୍ତବ-ଧର୍ମୀ ଓ ଚିନ୍ତାଧାରା ବିଜ୍ଞାନସମ୍ମତ, ସୁପରିଚ୍ଛନ୍ନ, ସୁଶୃଙ୍ଖଳ ଓ ପାଣ୍ଡିତ୍ୟପୂର୍ଣ୍ଣ । ଆରିଷ୍ଟଟଲଙ୍କର ଦର୍ଶନ ପ୍ଲେଟୋଙ୍କର ଅନ୍ତର୍ନିହିତ ମତବାଦର ଏକ ପୂର୍ଣ୍ଣ ପରିଣତି ଅଟେ । ବିଶ୍ୱକବି 'ଦାନ୍ତେ' ଆରିଷ୍ଟଟଲଙ୍କ ପ୍ରସଙ୍ଗରେ କହିଛନ୍ତି,"The father of them that know," ଅର୍ଥାତ୍ ଯେଉଁମାନେ ଜାଣନ୍ତି ସେମାନଙ୍କର ପିତା ।

ଆରିଷ୍ଟଟଲଙ୍କର ଦର୍ଶନରେ ବୈଶିଷ୍ଟ୍ୟ ଏହି ଯେ ସେ ପ୍ରତ୍ୟେକ ବିଷୟବସ୍ତୁରେ ପୂର୍ବଗାମୀ ମତବାଦର ସଂକ୍ଷିପ୍ତ ବର୍ଣ୍ଣନା, ବିଶ୍ଳେଷଣ, ସମାଲୋଚନା ଓ ପରିଶେଷରେ ସ୍ୱକୀୟ ମତ ସଂକ୍ଷେପରେ ଉପସ୍ଥାପିତ କରି ଚିନ୍ତାଧାରାକୁ ସୁସ୍ପଷ୍ଟ କରିଛନ୍ତି । ଦାର୍ଶନିକ ପ୍ଲେଟୋଙ୍କର ମୌଳିକତା ମାନବୀୟ ବିଷୟାବଳୀ ଆଲୋଚନାରେ ଥିବାବେଳେ ଆରିଷ୍ଟଟଲଙ୍କର ମୌଳିକତା ବୈଜ୍ଞାନିକ ବିଷୟ ସମ୍ବଳିତ ଆଲୋଚନାରେ ନିହିତ । ତାଙ୍କର ପ୍ରଣୀତ 'Organan' ପରବର୍ତ୍ତୀ କାଳରେ ଇଉରୋପରେ ସବୁ ତର୍କଶାସ୍ତ୍ରର ମୂଳଗ୍ରନ୍ଥ ଅଟେ । ଅବରୋହାନୁମାନ ତର୍କଶାସ୍ତ୍ର ସହିତ ତାଙ୍କର ପ୍ରତିଷ୍ଠିତ ଏକ ମହତ୍ତ୍ୱ-ପୂର୍ଣ୍ଣ ପରିପ୍ରକାଶ ଆରୋହାନୁମାନ ତର୍କଶାସ୍ତ୍ରଟି ଏକ ତ୍ରୁଟିପୂର୍ଣ୍ଣ ବିଷୟବସ୍ତୁ ଅଟେ । କାରଣ ସେ ସମ୍ପୂର୍ଣ୍ଣ ଗଣନାମୂଳକ ବା (Induction per Complete enumeraction) ଆରୋହାନୁମାନକୁ ବୈଜ୍ଞାନିକ ଆରୋହାନୁମାନ ବୋଲି ଆଖ୍ୟା ଦେଇଛନ୍ତି ।

ଆରିଷ୍ଟଟଲଙ୍କ 'ସତ୍ତା' ଓ ଜ୍ଞେୟର ମୌଳିକ ଧାରଣା ସମୂହ ବା Categcries ଅଭିଜ୍ଞତା ଭିତ୍ତିକ ହେଲେହେଁ ତାଙ୍କର ତାତ୍ତ୍ୱିକ ଦୃଷ୍ଟିର ପରିଚୟ ଦିଏ । ଦ୍ରବ୍ୟ, ଗୁଣ, ସମ୍ବନ୍ଧ, ସ୍ଥାନ, କାଳ, ଅବସ୍ଥା, ସକ୍ରିୟ, କର୍ମ, ନିଷ୍କ୍ରିୟତା—ଏହି ସମସ୍ତ ମୌଳିକ ଧାରଣା ସତ୍ ବା ଅସ୍ତିତ୍ୱଶୀଳ ପଦାର୍ଥର ମୌଳିକ ଆକାର ଅଟେ । କୌଣସି ବସ୍ତୁର ବାସ୍ତବ ଗୁଣାବଳୀ ଏହି ସବୁ ମୌଳିକ ଧାରଣାର ବ୍ୟତିକ୍ରମ ନୁହେଁ । ବସ୍ତୁର ବର୍ଣ୍ଣନା ଦୃଷ୍ଟିରୁ ମୌଳିକ ଗୁଣାବଳୀର ସ୍ଥାନ ଅତି ଗୁରୁତ୍ୱପୂର୍ଣ୍ଣ ଅଟେ । ସେଥିନିମନ୍ତେ ଆରି-ଷ୍ଟଟଲଙ୍କ ମତରେ ତର୍କଶାସ୍ତ୍ର ମୂଳତଃ ପଦ୍ଧତି ଶାସ୍ତ୍ର ଓ ଏହି ଶାସ୍ତ୍ର ସର୍ବ ଶାସ୍ତ୍ରର ପ୍ରବେଶଦ୍ୱାର ଅଟେ । ଦ୍ୱନ୍ଦ୍ୱାତ୍ମକ ପଦ୍ଧତି ବା (Dielectic) ଯଥାର୍ଥ ଜ୍ଞାନଲାଭର ଏକ ବିରୋଧୀ ପନ୍ଥା ଅଟେ, କାରଣ ଏହି ନ୍ୟାୟରେ ମଧ୍ୟପଦରେ ମଧ୍ୟପଦ ପ୍ରଣୀତ ପଦର ଅବତାରଣା ଫଳରେ ଆରିଷ୍ଟଟଲ ଏହାକୁ ଅବୈଜ୍ଞାନିକ ଓ ଅସମ୍ପୂର୍ଣ୍ଣ

ଘେନ ବୋଲି ଆଖ୍ୟା ଦେଇଛନ୍ତି । ତାଙ୍କର ମୌଳିକ ସୂକ୍ତି (Dictum) ଯୁକ୍ତର ଯଥାର୍ଥତା ପରୀକ୍ଷଣ କରିବାରେ ଏକମାତ୍ର ପ୍ରକୃତ ପନ୍ଥା ଅଟେ । Laugentius valla (1407-57) ଆରିଷ୍ଟଟଲଙ୍କର ତର୍କଶାସ୍ତ୍ରକୁ ଅସ୍ୱାଭାବିକ ଓ ଅପ୍ରାକୃତ ପ୍ରଣାଳୀ ବୋଲି ବର୍ଣ୍ଣନା କରିଛନ୍ତି କାରଣ ଏହି ପ୍ରଣାଳୀ ବାସ୍ତବ ଓ ସାକ୍ଷାତ ଜ୍ଞାନ ପ୍ରଦାନ କରିବାରେ ଅସମର୍ଥ । Lorenzodella val e ତାଙ୍କର Dilecticae disputationes Contra Aristotetuos ଗ୍ରନ୍ଥରେ ଆରିଷ୍ଟଟଲଙ୍କର ତର୍କଶାସ୍ତ୍ରକୁ ଏକ ଶୂନ୍ୟଗର୍ଭ ସୂଚକ କରଣ ପ୍ରଣାଳୀ ବୋଲି ବର୍ଣ୍ଣନା କରିଛନ୍ତି । କାରଣ ଏହା ମିଥ୍ୟାବାଦ ଓ କାଳ୍ପନିକ କଳ୍ପ ଉଦ୍ୟୋଗ ଉପରେ ପ୍ରତିଷ୍ଠିତ । ଆରିଷ୍ଟଟଲଙ୍କର ତର୍କଶାସ୍ତ୍ରର ପଦଗୁଡ଼ିକ ବସ୍ତୁର ବାସ୍ତବସ୍ୱରୂପ ପ୍ରକାଶ କରିବାରେ ଅସମର୍ଥ ଓ ତାଙ୍କର ସାହିତ୍ୟଶାସ୍ତ୍ର ତର୍କଶାସ୍ତ୍ରର ଅଧୀନ ଅଟେ । ଫରାସୀ ଦେଶୀୟ ପ୍ରସିଦ୍ଧ ମାନବବାଦୀ ପେଟ୍ରୋସ୍ ରମସ୍ ତାଙ୍କର ତର୍କଶାସ୍ତ୍ରକୁ ଏକ କୃତ୍ରିମ ଦୋଷ ଓ ଅବାସ୍ତବ ଦେଇ ବର୍ଣ୍ଣନା କରିଛନ୍ତି ତର୍କଶାସ୍ତ୍ରର ପ୍ରକୃତ ସ୍ୱରୂପ ହେଲା- "True logic is a natural logic, it formulates the laws, which gove rn man's sponteneous and natural thanking ana reascning as expressed in correct speech. It is thus the Ars disserendi and is cl sely related with rhetoric. True Logic thus is concerned with concept as well as Judjment." (Institutionum Dialectiecarum Libri III) ଗ୍ରନ୍ଥ ହିଁ ଆରିଷ୍ଟଟଲଙ୍କର ତର୍କଶାସ୍ତ୍ରର ବହୁଳାଚରଣ କରେ ।

ଆରିଷ୍ଟଟଲଙ୍କର ଯୁକ୍ତିପୂର୍ଣ୍ଣ ରଚନା 'ଆଦ୍ୟଦର୍ଶନ' (First Philosophy) ଧର୍ମଶାସ୍ତ୍ର (Theology) ଅଟେ । ପରବର୍ତ୍ତୀ କାଳରେ ଏହି ଦର୍ଶନ 'ତତ୍ତ୍ୱବିଦ୍ୟା (Metaphysics) ନାମରେ ଅଭିହିତ ହେଲା । ଏହି Metaphysics ଶବ୍ଦଟି Rhodes ଦେଶୀୟ 'ଏଣ୍ଡ୍ରୋନିକାସ' ନାମକ ପ୍ରଧାନ ସଂପାଦକଙ୍କର ସୃଷ୍ଟି ଅଟେ । ଉକ୍ତ ସମାଜକ ଆରିଷ୍ଟଟଲଙ୍କର ପଦାର୍ଥବିଦ୍ୟା (Physics) ର ସମାପନା ଅନ୍ତେ 'ଆଦ୍ୟଦର୍ଶନ' ପ୍ରକାଶ କରି ତାହାର ନାମ (Metaphysics ବା Physics ର ଅନ୍ତ ଦେଇଥିଲେ ।

ପଦାର୍ଥ ସମ୍ବନ୍ଧୀୟ ମୂଳ ଅନୁସନ୍ଧାନଟି ବିଜ୍ଞାନର କାର୍ଯ୍ୟ ଏବଂ ଜଗତର ଆଦି କାରଣ ବା ମୂଳ ଅନୁସନ୍ଧାନ କରିବା ସର୍ବୋଚ୍ଚ ବିଜ୍ଞାନର କାର୍ଯ୍ୟ ଅଟେ । ଅତଏବ ସର୍ବୋଚ୍ଚ ବିଜ୍ଞାନଟି ଆଦି ଦର୍ଶନ ଅଟେ ।

ଆଦ୍ୟ ପଦାର୍ଥ ବା ମୂଳଦ୍ରବ୍ୟକୁ 'ଈଶ୍ୱର' ବୋଲି ଆରିଷ୍ଟଟଲ କହିଛନ୍ତି । ଏଥିପାଇଁ ତାଙ୍କର ଆଦ୍ୟ ଦର୍ଶନକୁ ଧର୍ମଶାସ୍ତ୍ର (Theology) ବୁଝାଯାଏ । କିନ୍ତୁ ଖ୍ରୀଷ୍ଟିୟ ପକ୍ଷରେ ପରବର୍ତ୍ତୀ ଯୁଗରେ ଏହି ଧର୍ମଶାସ୍ତ୍ର ତତ୍ତ୍ୱ ବିଦ୍ୟାଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇଥିଲା ।

ଆରିଷ୍ଟଟଲଙ୍କର ମତାନୁସାରେ ଇନ୍ଦ୍ରିୟ ଗ୍ରାହ୍ୟ ବସ୍ତୁଟି ଚଞ୍ଚଳ ଓ ଧ୍ୱଂସଶୀଳ ଅଟେ । ଏହାକୁ ଉପାଦାନ ବୋଲି ସେ କହିଛନ୍ତି ଏହା ଏକ ଆକାର ବ୍ୟତିରେକ ସମ୍ଭାବନା ଓ ଆକାର ସାହାଯ୍ୟରେ ଉପାଦାନ ବାସ୍ତବ ରୂପ ଧାରଣ କରେ । ଈଶ୍ୱର କେବଳ ଆକାର ବୈଶିଷ୍ଟ୍ୟରେ ବିଶିଷ୍ଟ । ଏହି ଈଶ୍ୱର ଅଚଞ୍ଚଳ ଓ ଶାଶ୍ୱତ । ଏହି ଈଶ୍ୱରଙ୍କ ଧାରଣା ବ୍ୟତୀତ ପରିବର୍ତ୍ତନଶୀଳ ବସ୍ତୁର ସ୍ଥିତି ଅକଳ୍ପନୀୟ ଅଟେ । ଈଶ୍ୱରଙ୍କ ହସ୍ତ ସକଳ ବସ୍ତୁ ମଧ୍ୟରେ ନିହିତ । ଆରିଷ୍ଟଟଲଙ୍କର ଏହି ମତବାଦକୁ Pantheism ବୋଲି ବୁଝାଯାଏ । ବିଖ୍ୟାତ ପଣ୍ଡିତ R. G. Colling Wo d ଙ୍କ ପ୍ରଣୀତ An essay on Metaphysics ଗ୍ରନ୍ଥରେ ଏହି ମତବାଦ ସମ୍ପର୍କରେ କହିଅଛନ୍ତି "I he God Knows no ieligion. He is not even the creater of the world on the otherland God is related to 'man and Nature by ties of mutual love and disire". ପରବର୍ତ୍ତୀ ଯୁଗରେ ଧର୍ମଯାଜକମାନେ ଆରିଷ୍ଟଟଲୀୟ Pantheism ମତବାଦକୁ ଅସ୍ୱୀକାର କରି Deism ମତବାଦ ପ୍ରଚାର କରିଥିଲେ । ସେମାନଙ୍କ ମତରେ ଈଶ୍ୱର ବିଶ୍ୱସ୍ରଷ୍ଟା, କର୍ତ୍ତା, ଭୋକ୍ତା ଓ ବିଶ୍ୱହନ୍ତା ମଧ୍ୟ ।

'ନିକୋମିକିୟାନ' ଗ୍ରନ୍ଥରେ ଆରିଷ୍ଟଟଲ ନୀତିଶାସ୍ତ୍ରର ସ୍ୱରୂପ ଓ ଉଦ୍ଦେଶ୍ୟ ବିଷୟରେ ଆଲୋଚନା କରିଛନ୍ତି । ନୀତିଶାସ୍ତ୍ର ସଂଜ୍ଞା ପ୍ରସଙ୍ଗରେ ସେ କହିଛନ୍ତି ଯେ ଏହା ଚେଷ୍ଟା ସାହାଯ୍ୟରେ ଅର୍ଜିତ ଏକ ମାନସିକ ଦକ୍ଷତା ଓ ଏହା ବିଚାର ଓ ବିବେଚନା ସାହାଯ୍ୟରେ ସତ୍ୟର ସ୍ୱରୂପ ଉପଲବ୍ଧି କରେ । ମାନବ ଜୀବନର ମଙ୍ଗଳ ଓ ଅମଙ୍ଗଳ ସମ୍ବନ୍ଧୀୟ ବିଭିନ୍ନ କାର୍ଯ୍ୟ ସମ୍ପର୍କର ଆଲୋଚନା ମଧ୍ୟ ଏହି ମାନସିକ ଦକ୍ଷତା ଦ୍ୱାରା ସମ୍ଭବ ହୋଇଅଛି । କିନ୍ତୁ ସକ୍ରେଟିସ ଜ୍ଞାନକୁ ନୈତିକ ଧର୍ମ ବୋଲି କହିଛନ୍ତି । ଏହି ଉକ୍ତିକୁ ଆରିଷ୍ଟଟଲ ଅସ୍ୱୀକାର କରି ନୈତିକଧର୍ମ ଏକ ଅଭ୍ୟାସ ବା ନିର୍ବାଚନୀ କ୍ଷମତା ମାତ୍ର ବୋଲି ସ୍ୱୀକାର କରିଛନ୍ତି । ସଂଯତ ମାତ୍ରା ଜ୍ଞାନ ଏହାର ବୈଶିଷ୍ଟ୍ୟ ଅଟେ । ବୁଦ୍ଧି ବିବେଚନା ପରିଚାଳିତ ବିଚାର କ୍ଷେତ୍ରରେ ବୁଦ୍ଧିହିଁ ଉପଯୁକ୍ତ ପନ୍ଥା ଗ୍ରହଣ କରିବାରେ ଶ୍ରେଷ୍ଠ ନିର୍ଦ୍ଦେଶକ ହୋଇଥାଏ । ଯେ କୌଣସି ବିଷୟର ଅତିଶଯ୍ୟ ପରିହାର କରି ମଧ୍ୟାବସ୍ଥା ଗ୍ରହଣ କରିବାହିଁ ନୈତିକଧର୍ମ ଅଟେ । ପ୍ରପେଂସର

C. E. M. Joad ତାଙ୍କର ଗ୍ରନ୍ଥ Philosophy of Moral and Politics ରେ (Page 99) ଏହି ମଧ୍ୟ ବସ୍ଥାକୁ କେତେକ ପ୍ରବାଦ ବାକ୍ୟ ଦ୍ୱାରା ବର୍ଣ୍ଣନା କରିଛନ୍ତି । "By such Maxims" "Nothing too much," "Enough is as good as a feast" ' Wisdom Consists in knowing where to stop." It testifies its recognition of the value of the mean" ଚୀନଦେଶୀୟ ଦାର୍ଶନିକ 'Lin Yatang'ଙ୍କ ମତରେ ଆରିଷ୍ଟଟଲୀୟ ମଧ୍ୟ ଅବସ୍ଥା ହିଁ "the normal and essential human way of life" ବୋଲି କହିଛନ୍ତି ( Philosophy or moral and Politics—Joad).

ଆରିଷ୍ଟଟଲ ଉନ୍ନତମନକୁ ନୈତିକ ଧର୍ମର ମୁକୁଟମଣି ବୋଲି କହିଅଛନ୍ତି । ଏହି ଉନ୍ନତମନ ଅନ୍ୟାନ୍ୟ ଗୁଣଗୁଡ଼ିକୁ ମହିମାନ୍ୱିତ କରିଥାଏ । ଉନ୍ନତମନା ମାନବ ନୈତିକ ଗୁଣସମ୍ପନ୍ନ, କ୍ଷମା ଓ ବିଜ୍ଞତା ନିବନ୍ଧ ବାଞ୍ଛତାର ଅଧିକାରୀ । ଆସ୍ତିର ବ୍ୟବସ୍ଥାରେ ସକଳ ବ୍ୟକ୍ତି ସ୍ଥିତପ୍ରଜ୍ଞ ବା ଆ ର୍ଦ୍ଦ ତତ୍ତ୍ୱର ଅଧିକାରୀ ଅଟେ । ନୀତିଶାସ୍ତ୍ର ଏକ ରାଷ୍ଟ୍ର-ନୈତିକ ବିଷୟ ଅଟେ । କାରଣ ଆଦର୍ଶ ବିଷୟ ବ୍ୟକ୍ତି ଓ ରାଷ୍ଟ୍ର କ୍ଷେତ୍ରରେ ସମଭାବରେ ପ୍ରଯୁଜ୍ୟ । ଏହି ଦୃଷ୍ଟିରୁ Plato ଙ୍କର 'Republic' ସହିତ ଆରିଷ୍ଟଟଲଙ୍କ ନୈତିକ ବିଷୟ ମତର ଐକ୍ୟ ଦୃଷ୍ଟ ହୁଏ । ଆରିଷ୍ଟଟଲଙ୍କ ଦର୍ଶନରେ ବ୍ୟକ୍ତିଜୀବନର ମଙ୍ଗଳ ରାଷ୍ଟ୍ର ମାଧ୍ୟମରେ ହିଁ କେବଳ ସମ୍ଭବ । ଅତଏବ ନୀତିଶାସ୍ତ୍ର 'ରାଷ୍ଟ୍ରନୀତି'ର ଏକ ଅଂଶ ବା ଭୂମିକା ଅଟେ ।

ଆରିଷ୍ଟଟଲଙ୍କ ରାଷ୍ଟ୍ରନୀତିକୁ ସଂକ୍ଷେପରେ ବିଚାର କଲେ ଏତିକି କୁହାଯାଏ ଯେ ତାଙ୍କ ମତରେ ରାଷ୍ଟ୍ର ଏକ ସାର୍ବଭୌମ ପ୍ରତିଷ୍ଠାନ ହୋଇଥିବାରୁ ରାଷ୍ଟ୍ର ମଧ୍ୟରେ ହିଁ ବ୍ୟକ୍ତି ସ୍ୱାଧୀନତା ଯଥାର୍ଥ ରୂପ ଲାଭକରିଥାଏ । ଅର୍ଥନୀତି, ସ୍ତ୍ରୀର ଜୀବନର ମାନଦଣ୍ଡ ନିର୍ଣ୍ଣୟ କରିଥାଏ । ଏହାର ପ୍ରଭାବ ବିଭିନ୍ନ ଶାସନତନ୍ତ୍ରର ଉତ୍ଥାନ ପତନ ଓ ରାଷ୍ଟ୍ରର ସାର୍ବ-ଭୌମିକତାର ମାନଦଣ୍ଡ ନିର୍ଣ୍ଣୟ କରିଥାଏ । ଆରିଷ୍ଟଟଲ ରାଜତନ୍ତ୍ରର ମୂଲ୍ୟ ସ୍ୱୀକାର କରିଲେହେଁ ସଜ୍ଜନ ଶାସନତନ୍ତ୍ରକୁ (Folicy) ସର୍ବୋତ୍ତମ ବୋଲି ଆଖ୍ୟା ଦେଇଛନ୍ତି । ଏହି ତନ୍ତ୍ରରେ ଜନ ଇଚ୍ଛା ନ୍ୟାୟସଙ୍ଗତ ଭାବରେ ପ୍ରକାଶ ଲାଭ କରିଥାଏ । ରୋମାନ୍ କାଥଲିକ ଚର୍ଚ୍ଚ ଯେପରି ଖ୍ରୀଷ୍ଟିୟ ସଂସ୍କୃତିର ପ୍ରତିନିଧି ସେହିପରି ଆରିଷ୍ଟଟଲୀୟ ସଂସ୍କୃତିର ପ୍ରତିନିଧି ରାଷ୍ଟ୍ର ଅଟେ । ଆଧୁନିକ ଯୁଗରେ ଆରିଷ୍ଟଟଲ କଳ୍ପିତ ରାଷ୍ଟ୍ରହିଁ ଜାତୀୟ ରାଷ୍ଟ୍ରରେ ବ୍ୟାପ୍ତି ଲାଭ କରିଅଛି । ତାଙ୍କର କଳ୍ପିତ ଆଦର୍ଶ ରାଷ୍ଟ୍ର ଯଦିଓ ଅଦ୍ୟାବଧି ଏକ ସ୍ୱପ୍ନ ତଥାପି ଏହା ଶ୍ରେଷ୍ଠ ଜୀବନ ଲାଭ ଓ ଜନସାଧାରଣଙ୍କର ସୁକଠସ୍ଫୂର୍ତ୍ତି ବିକାଶ ନିମିତ୍ତ

ନିହିତ ଅଛି । ପ୍ରାଚ୍ୟ ଓ ପାଶ୍ଚାତ୍ୟର ଯୁକ୍ତ ସାଧନା ବଳରେହିଁ ଆରିଷ୍ଟଟଲଙ୍କର କଳ୍ପିତ ରାଷ୍ଟ୍ର ପ୍ରତିଷ୍ଠିତ ହେଲେ ରାଷ୍ଟ୍ରର ପ୍ରକୃତ ସାର୍ଥକତା ପୂର୍ଣ୍ଣତା ଲାଭ କରିବା ସମ୍ଭବ ହେବ ।

ଆରିଷ୍ଟଟଲ କହୁଛନ୍ତି ଯେ ଏହି ବିଶ୍ୱର ଗତି ଅବ୍ୟାହତ ରଖିବା ନିମନ୍ତେ ଈଶ୍ୱରଙ୍କ କଳ୍ପନା ପ୍ରୟୋଜନହୀନ । କାରଣ ଏହି ବିଶ୍ୱ ଶାଶ୍ୱତକାଳ ଅସ୍ତିତ୍ୱଶୀଳ ଓ ଚିରନ୍ତନ ଗତିଯୁକ୍ତ । ପ୍ରକୃତ ଜ୍ଞାନହିଁ ଅମୃତତ୍ୱର ଅଧିକାରୀ । ମଧ୍ୟଯୁଗୀୟ ଦାର୍ଶନିକମାନେ ଏହି ମତବାଦର ବିରୁଦ୍ଧରେ ରହସ୍ୟବାଦ ପ୍ରଚାର କରିଥିଲେ ଓ ଆରିଷ୍ଟଟଲଙ୍କର ଦର୍ଶନକୁ ଏକ ଭ୍ରାନ୍ତବାଦ ବୋଲି ପ୍ରଚାର କରିଥିଲେ । ଆରିଷ୍ଟଟଲ ବିଶ୍ୱର ଅନନ୍ତ ତତ୍ତ୍ୱ ସ୍ୱୀକାର କଲେହେଁ ଏହା ଯୁକ୍ତ ସପକ୍ଷରେ ବା ବିପକ୍ଷରେ କୌଣସି ଯୁକ୍ତି ଅବତାରଣା କରି ନ ଥିଲେ । ସେଥିନିମନ୍ତେ ମଧ୍ୟଯୁଗରେ ଈଶ୍ୱର ହେଉଛନ୍ତି ସ୍ରଷ୍ଟା ବୋଲି ସ୍ୱୀକୃତ ହୋଇଥିଲା । ଏହି ମଧ୍ୟଯୁଗୀୟ ଦର୍ଶନ ଧର୍ମବିଶ୍ୱାସ ଉପରେ ପ୍ରତିଷ୍ଠିତ ହୋଇଥିଲା ଏବଂ ଆରିଷ୍ଟଟଲୀୟ ଦର୍ଶନକୁ ଏହି ମଧ୍ୟଯୁଗରେ ଅସ୍ୱୀକାର କରାଯାଇଥିଲା ।

ପରବର୍ତ୍ତୀ ଯୁଗରେ ଆରିଷ୍ଟଟଲଙ୍କ ଦର୍ଶନର ବୈଶିଷ୍ଟ୍ୟ ଉପଲବ୍ଧି କରି ଏହି ଦର୍ଶନର ବୈଚିତ୍ର୍ୟ ସମ୍ବନ୍ଧରେ ଆଗ୍ରହ ପ୍ରକାଶ କରାଯାଇଥିଲା । ଏହି ଦର୍ଶନର ଏକ ବୈଚିତ୍ର୍ୟ ଏହି ଯେ ଏହା ଈଶ୍ୱର, ଜଗତ ଓ ମାନବ ମଧ୍ୟରେ ଏକ ପ୍ରାଥମିକ ସମ୍ବନ୍ଧରେ ନିର୍ଣ୍ଣୟ ଚିନ୍ତା ପ୍ରଦାନ କରିଅଛି । ଆରିଷ୍ଟଟଲ୍ ସତ୍ୟର ସାଧକ ଥିବାରୁ ସତ୍ୟାନ୍ୱେଷ ଜୀବନହିଁ ତାଙ୍କ ମତରେ ସତ୍ ଜୀବନ ଅଟେ । ସତ୍ ବ୍ୟକ୍ତିହିଁ ତାଙ୍କ ମତରେ ପ୍ରକୃତ ଦାର୍ଶନିକ ଓ ଭୂମାଧ୍ରୁହିଁ ଅମୃତତ୍ୱ ।

'ଟୋମାସ୍ ଆକ୍ୱିନାସ୍' ଏହି ହେତୁରେ ଆରିଷ୍ଟଟଲଙ୍କୁ ପୃଥିବୀର ଶ୍ରେଷ୍ଠ ଦାର୍ଶନିକ ବୋଲି ଆଖ୍ୟା ଦେଇଛନ୍ତି । ଆରିଷ୍ଟଟଲଙ୍କ ଦର୍ଶନ ପ୍ଲେଟୋଙ୍କ ଦ୍ୱନ୍ଦ୍ୱମୂଳକ ମତବାଦର ଏକ ପୂର୍ଣ୍ଣ ପରିଣତି ଅଟେ । ପ୍ଲେଟୋଙ୍କ ଦର୍ଶନକୁ ଆରିଷ୍ଟଟଲ ଜ୍ଞାନର ବିଶ୍ୱକୋଷ ରୂପରେ ରୂପାୟନ କରିଥିଲେ । ଆରିଷ୍ଟଟଲଙ୍କର ବୁଝିବା ଯଥାର୍ଥ ଜ୍ଞାନାହରଣ ନିମନ୍ତେ ଯେ ଏକ ଶ୍ରେଷ୍ଠ ପନ୍ଥା ଏହା ଅଦ୍ୟାବଧି ସର୍ବବାଦୀ ସମ୍ମତ ଓ ସର୍ବଜନ ବିଦିତ । ଏହି ଦର୍ଶନ ମନୁଷ୍ୟର ମାନସିକ ଓ ଆଧ୍ୟାତ୍ମିକ କୋଣ ନିମିତ୍ତ ଉଦ୍ଦିଷ୍ଟ ଅଟେ । ପ୍ଲେଟୋଙ୍କର ଆକାରବାଦ ଜଗତର ବାସ୍ତବତା ଅସ୍ୱୀକାର କରିଥିବା ସ୍ଥଳେ ଆରିଷ୍ଟଟଲ ଏହି ଜଗତକୁ ସତ୍ୟ, ଶିବ ଓ ସୁନ୍ଦର ବୋଲି କହିଛନ୍ତି । R. G. Colling Wood ଙ୍କର An Essay on Metaphysics ଗ୍ରନ୍ଥରେ କହିଛନ୍ତି "That which gives truth reality to the

world is precisely the form of idea that animates it. Without Form matter possesses no feality. By Form Aristotle meant the totality of the properties of a thing ............ ...matter embodies the form by providing the element in which it is able to work its influence."

ପରିଶେଷରେ କୁହାଯାଇପାରେ ଯେ ଆରିଷ୍ଟଟଲଙ୍କର ନିୟମ ତାନ୍ତ୍ରିକତା (Constitutionalism) ବା ଆଇନର ଶାସନ (Rule of law) ଓ ସମ୍ୟକ ନୀତି (Principle of the mean) ଚିରକାଳ ନିମନ୍ତେ ବିଭ୍ରାନ୍ତ ମାନବଜାତିକୁ ଆଲୋକ ଶିଖା ଦେଖାଇବ, ଅତଏବ ଆରିଷ୍ଟଟଲଙ୍କର ଦର୍ଶନ ଶାଶ୍ୱତ, ସାର୍ବଜନୀନ ଓ ସର୍ବଜନ ଗ୍ରାହ୍ୟ ଅଟେ ।

—×—

## BIBLIOGRAPHY


1. The oxford translation of the works of Aristotle Published in eleven volumes, under the editorship of J. A. Smith and W. D. Ross.
2. Aristotle by Sir W. D· Ross (Methuen 2nd edition 1930)
3 Aristotle's Metaphysics 2 vols (O.U.P., 1924)
4· Aristotle by A. E, Taylor.
2. Aristotle by Randle.
6. Aristotle by C. Piat.
7· Aristotle by G. R. G Mure.
8. Aristotle and the earlier Peripatetics (Longmans)
9. The Political thought of Plato and Aristotle. by E. Barker.
10, Aristotle's theory of Poetry and Fine Art by S. H. Butcher (Macmillan).
11· A History of Philosophy Vol· I by Federick Copleston,S· J
12· History of Western Philosophy by Bertrand Russell.
13· A critical History of Philosophy by W· T. Stace London—Macmillan
14. Philosophy of Morals and Politics by C· E· M. Joad·
15. An essay on Metaphysics by R. G. Colling Wood·